



ପ୍ରାଚୀ ଗ୍ରନ୍ଥମାଳା ଊନତ୍ରିଂଶ

# ଚଉତିଶା-ମଧୁଚକ୍ର




ପ୍ରାଚୀ ସମିତି

# ଚଉତିଶା-ମଧୁଚକ୍ର

( ପ୍ରଥମ ଖଣ୍ଡ )

ପ୍ରାଚୀ ସମିତି ପକ୍ଷରୁ

ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି: ଏ: ଙ୍କ

ଦ୍ୱାରା ସଙ୍କଳିତ

ଓ

ଚଉତିଶା ଚନ୍ଦ୍ରିକା ଟୀକା ସହ

ସମ୍ପାଦିତ

ପ୍ରକାଶକ

ପ୍ରାଚୀ ସମିତି, କଟକ

ମୂଲ୍ୟ ଆଠଅଣା




ଉଚ୍ଛ୍ୱସିତ ହୃଦୟଭାବକୁ ବର୍ଣ୍ଣମାଳାର ଚଉତିଶ ଅକ୍ଷର କ୍ରମରେ କବିତାରେ ପ୍ରକାଶ କରିବା କଳା-ପ୍ରାଣ କୁଶଳହସ୍ତ ଉତ୍କଳୀୟ ପ୍ରାଚୀନ କବିଗଣଙ୍କର ଗୋଟିଏ ବିଶିଷ୍ଟ ପ୍ରବୃତ୍ତି । ଅଧୁନା ଯେଉଁମାନେ ବିଦେଶୀୟ ଭାବରେ ଅନୁପ୍ରାଣିତ ସେମାନେ କହିବେ ନିରଙ୍କୁଶ ଭାବ ଗୋଡ଼ରେ ଏ କଠୋର ନିଗଡ଼ କାହିଁକି ? କିନ୍ତୁ କଳା ନିପୁଣଙ୍କୁ ଅଙ୍ଗଭୂଷଣ ରୂପେ ବରଣ କରିନିଏ, ଯାହାକୁ ନିଗଡ଼ କୁହାଯାଉଛି ତାହା କଳାର ଅମ୍ଳାନ ଅଳଙ୍କାର ବିଶେଷ । ଏହା ପୃଥିବୀରେ ଯଦି କୌଣସି ଜାତି ସମ୍ୟକ୍ ବୁଝିଥାଏ ତେବେ ସେ ଉତ୍କଳୀୟ ।

ଇଉରୋପୀୟ ସାହିତ୍ୟରେ ସନେଟ୍ ବା ଚତୁର୍ଦ୍ଦଶ ପଦୀ କବିତା ଶତ ଶତ ବର୍ଷ ହେଲା ଭାବ ପ୍ରକାଶର ଗୋଟିଏ ବିଶିଷ୍ଟ ସରଣୀ ବୋଲି ବିବେଚିତ ହୋଇ ଆସୁଅଛି । ତାହାର ଜନପ୍ରିୟତା ଆଜିଯାଏଁ କ୍ଷୁଣ୍ଣ ହୋଇନାହିଁ, ବରଂ ପୃଥିବୀର ଅନ୍ୟାନ୍ୟ ଅଂଶରେ—ଭାରତରେ ମଧ୍ୟ—ଚତୁର୍ଦ୍ଦଶ ପଦୀ କବିତାକୁ କବିମାନେ ନିଜର କରି ନେଉଅଛନ୍ତି । ଉତ୍କଳର ଆଧୁନିକ ଯୁଗର କବିମାନେ ମଧ୍ୟ ସନେଟ, ଅଥବା ବଙ୍ଗଳା ଅନୁକରଣରେ ସଙ୍ଗୀତହୀନଛନ୍ଦବିଶିଷ୍ଟ କବିତା ଲେଖିବାକୁ ଶ୍ଳାଘାର ବିଷୟ ମନେ କରୁଅଛନ୍ତି । କିନ୍ତୁ ହା ରେ ଦେଶଜାତ ଚଉତିଶା ! ସେମାନଙ୍କର ନାସିକା କୁଞ୍ଚନ

କେବଳ ଚୋର ପାଇଁ ସୃଷ୍ଟ ଥାଏ ! କହିବା ବାହୁଲ୍ୟ ବିଦେଶାଗତ ପଦାର୍ଥ ପ୍ରତି ଅନ୍ଧପ୍ରକୃତିର ମମତା ଓ ସ୍ୱଦେଶଜ ପଦାର୍ଥ ପ୍ରତି କାରଣ-ହୀନ ଘୃଣା ଜାତୀୟ ଅଧଃପତନର ଅଭ୍ରାନ୍ତ ଲକ୍ଷଣ ।

କିନ୍ତୁ ଉତ୍କଳୀୟ-ମନ ଉପରେ ଯୁଗଯୁଗାନ୍ତ ଧରି, ଚଉତିଶା ଯେଉଁ ପ୍ରଭାବ ବିସ୍ତାର କରିଅଛି ତାହା ମୁଷ୍ଟିମେୟ କେତେଜଣ 'ଫେଷିଟ'ଙ୍କ ନାସାକୁଞ୍ଚନରେ ଉଡ଼ି ଯିବାର ଜିନିଷ ନୁହେଁ । ଆଜି ଉତ୍କର୍ଷ ଗତରେ ଶିଶୁଭାବ ଯେପରି ବିକୃତ ହୋଇ ପଡ଼ିଅଛି, ଜାତୀୟ ଭାବ ଯେପରି ଅଶାନ୍ତ ବିଳାପ କରୁଅଛି ଉତ୍କଳର ସୁପ୍ତ ଫୁଲ ପକ୍ଷୀଙ୍କୁ ଜଗାଇବାକୁ ଉତ୍କଳର କବିମାନେ ଯଦି ବିଦେଶୀ-ବ୍ୟାମୋହ ତ୍ୟାଗ କରି ଭାବ ପ୍ରକାଶର ପୂର୍ବ ପୁରୁଷାନୁସୃତ ଜାତୀୟ ମୌଳିକ ସରଣୀ ଚଉତିଶା ଓ ଚଉପଦୀ ଆଦିକୁ ଧରନ୍ତେ ତେବେ ନବୀନ-ଭାବ-ସମ୍ପଦ ବିଶିଷ୍ଟ ଦଳଙ୍କ ମଧ୍ୟରେ ଆବଦ୍ଧ ନ ରହି ସମଗ୍ର ଦେଶର ଦୈନ୍ୟ ଦୂର କରନ୍ତା । ଉତ୍କଳ ତାର ଆତ୍ମାର ଉଦ୍‌ବୋଧନ ନିମନ୍ତେ ତାର ଜାତୀୟ କବିକୁ ଅପେକ୍ଷା କରୁଅଛି । କିନ୍ତୁ ସେ କାହାନ୍ତି ?

ଉତ୍କଳୀୟଗଣ ଅତୀତରେ ଚଉତିଶା ନାମରେ ଯେଉଁ ସବୁ କଣ୍ଠହାର ଗୀତ ରଚନା କରି ପ୍ରାଣ ତୃପ୍ତ କରୁଥିଲେ ସେମାନଙ୍କର ସଂଖ୍ୟା ଯେ କେତେ ତାହା କହିହେବ ନାହିଁ । ଆମ୍ଭେମାନେ ପ୍ରାୟ ଦୁଇଶତ ଯାଏଁ ଚଉତିଶା ଏ ପର୍ଯ୍ୟନ୍ତ ଆବିଷ୍କାର କରିବାକୁ ସକ୍ଷମ ହୋଇଅଛୁଁ । ସମୟକ୍ରମେ ନୂଆ ନୂଆ ପୋଥି ଆସିଲେ ନୂଆ ନୂଆ ଚଉତିଶାର ସନ୍ଧାନ ମିଳୁଅଛି । ପ୍ରାପ୍ତ ସମସ୍ତ ଚଉତିଶାକୁ ଏକତ୍ର କରି ଆମ୍ଭେମାନେ ଉତ୍କଳର

ବର୍ତ୍ତମାନ ଓ ଅନାଗତ ବଂଶଧରମାନଙ୍କ ଉପଦେଶ ନିମିତ୍ତ ସେ ଗୁଡ଼ିକୁ 'ଚଉତିଶା ମଧୁଚକ୍ର' ନାମକ ପୁସ୍ତକରୂପେ ରଖି ଦେଉଅଛୁଁ । ଉପଦେଶ ସାମଗ୍ରୀ ଛଡ଼ା ଉତ୍କଳସାହିତ୍ୟର ଇତିହାସଗଠନ ନିମନ୍ତେ ଚଉତିଶା ସବୁ ଅମୂଲ୍ୟ ଉପାଦାନ ଯୋଗାଇବେ । ଏପରି ସବୁ ଚଉତିଶା ମିଳୁଅଛି ଯାହା ନିକଟରେ ଓଡ଼ିଆର ପୁରାତନ କାବ୍ୟମାନ ଦୁଗ୍ଧପୋଷ୍ୟ ଶିଶୁବତ୍ ଅର୍ବାଚୀନ । ଚଉତିଶା ସମ୍ପର୍କରେ ଇତିହାସମୂଳକ ବିଶେଷ ଆଲୋଚନା ସମସ୍ତ ଚଉତିଶା ପ୍ରକାଶ ପାଇଗଲେ କରାଯିବ । ଆଜି ଚଉତିଶା ମଧୁଚକ୍ରର ଦଶଟିକାର ବିଶିଷ୍ଟ ଏହି ପ୍ରଥମ ଖଣ୍ଡ ଦେଶବାସୀଙ୍କ ହସ୍ତରେ ସମର୍ପଣ କରି ତନ୍ନିହିତ ଅନବଦ୍ୟ ମାଧୁରୀ ଉପଭୋଗ କରିବାକୁ ଆମ୍ଭେମାନେ ସେମାନଙ୍କୁ ସାଦରେ ଆହ୍ୱାନ କରୁଅଛୁଁ ।

ପ୍ରାଚୀ କର୍ମଭବନ
ଗଣେଶ ଘାଟ
କଟକ
ତା। ୧ । ୫ । ୩୧

ଶ୍ରୀ ବିବୁଧ ଚରଣ ପଟ୍ଟନାୟକ

# ଚଉତିଶା ମଧୁଚକ୍ର

# ସୂଚୀପତ୍ର







# ଚଉତିଶା ମଧୁଚକ୍ର

## ରାଧାଦର୍ଶନ ଚଉତିଶା

---

ପ୍ରଧାନତଃ ଦୀନକୃଷ୍ଣ ବିରହୀଗୋପୀଭାବର କବି । ଅମରକଲ୍ଲୋଳର ପର୍ଯ୍ୟବସାନ ମଧ୍ୟ ବିରହରେ । କବିତାଶ୍ରୁତ ଏହି କେତୋଟି ଚଉତିଶାରୁ ସୁସ୍ପଷ୍ଟ ଜଣାଯାଏ ଦୀନକୃଷ୍ଣ ମଧୁର ପ୍ରୀତିରସର ମଧ୍ୟ ଦରଦୀ ଥିଲେ । ମିଳନ ଓ ବିରହ ଉଭୟ ଅବସ୍ଥାର ବର୍ଣ୍ଣନାରେ ଦୀନକୃଷ୍ଣଙ୍କ ଭାବାବେଶ ସମାନ । ତେଣୁ ତାଙ୍କର ଚଉତିଶାମାନଙ୍କରେ ଗୋପୀ-ସଙ୍ଗ-ଲାଳସୀ ଶ୍ରୀକୃଷ୍ଣଙ୍କ ଆବେଗମୟ ଅନୁରାଗ ଓ କୃଷ୍ଣ-ବିରହିଣୀ ଗୋପିକା ଓ ଗୋପିକା-ବିରହୀ ଶ୍ରୀକୃଷ୍ଣଙ୍କ ବିରହର ହୃଦ୍‌ବେଗମୟ ଉଚ୍ଛ୍ୱାସ ସମାନ ଦକ୍ଷତା ସହ ଚିତ୍ରିତ ; କବିତା ଦୃଷ୍ଟିରୁ ଦେଖିଲେ ରାଧାଦର୍ଶନଚଉତିଶା ଓଡ଼ିଆ ସାହିତ୍ୟ ଭଣ୍ଡାରର ଗୋଟିଏ ଅତି ଉଜ୍ଜ୍ୱଳ ରତ୍ନ ।

କୃଷ୍ଣ କହନ୍ତି ଦୂତୀକି　　　　କରି ଗମନ କାଳକି
କହ ମୋତେ ଗଲୁ କାହିଁ ନନ୍ଦିନୀ ସେ ରୂପ ନିଜ ଚକ୍ଷୁ ରତିକି
ଅରେ ସଖି । ୧ ।

ଖେଳାଇ ଖଞ୍ଜନ ଅକ୍ଷି　　　　ଖରେ ଲୋଭ ଚାହିଁ ରଖି
ଖୀଣଉଦରୀ ମୋ ମନ-ନୟନକୁ କଲୁ ଅତି ମହାସୁଖୀ
ଅରେ ସଖି । ୨ ।

ଗତି ଗଜରାଜ ଜାଣି ଗୁଣୁଛି ସେ ଘୁଣମଣି
ଗଙ୍ଗାଧରରପୁ-ମହାନଦୀ କି ସେ ଅଣ୍ଟାଳି ହେମତରଣୀ
ଅରେ ସଖି । ୩ ।

ଘାଗୁଡ଼ି ବଳା ନୂପୁର ଘନ ଘନ ନାଦ ତାର
ଘୁଞ୍ଚାଇ ଦେଉଛି ମହାନନ୍ଦ କଳ ମରାଳ ଡ଼ାକ ଡମ୍ବର
ଅରେ ସଖି । ୪ ।

ନୋହିଲା ପିଷ୍ଟଡ଼ ଅକ୍ଷି ନାଗସ୍ୱାମଣିକ ଦେଖି
ନୀଳକଣ୍ଠଙ୍କୁ କେ କେତେ ସେବା କରି ପାଇଛି ସେ ଚନ୍ଦ୍ରମୁଖୀ
ଅରେ ସଖି । ୫ ।

ଙ୍ଗୁ ଚମ୍ପକବରଣୀ ଚରୁଣୀ ଚତ୍ରମୋହିନୀ
ଚନ୍ଦ୍ରାର୍କଭାଲେ ଗନ୍ଧ ଊର୍ଦ୍ଧ୍ୱତିଳକ କି କରିଅଛି ସେ ଧେନି
ଅରେ ସଖି । ୬ ।

ସ୍ଖଳିବେ ଯୋଗୀ ସମାଧି ଛଣେ ତା ଦେଖିବେ ଯଦି
ଛତିବାଡ଼ି ହୋଇ ରତିପତି ଶରେ କର୍ମରେ ହେବେ ବିବାଦୀ
ଅରେ ସଖି । ୭ ।

ଜାମ୍ବୂନଦ କଳେବର ଜଳି ଉଠୁଅଛି ତାର
ଯାହା ବୋଲି ବୋଲି ସଜନ ତାହାକୁ ଜଗନ୍ନାଥହିଁ ସେ ବର
ଅରେ ସଖି । ୮ ।

ଝଟକେ ତାଙ୍କ ଗଣ୍ଡେ ଝିମଣ୍ଟକେ ଦୁଖ ଖଣ୍ଡେ
ଝଟତି ଦେଖିଲେ ଫୁଲଶର ଶର ଦଅଇ ଫୁଲ କୋଦଣ୍ଡେ
ଅରେ ସଖି । ୯ ।

ନାହିଁ ତାହା ସମାନରେ          ନବ ପଞ୍ଚଭୁବନରେ
ନଷ୍ଟେ ଜାଣିଲି ସେ କାମଜୟ୍ତରଥ ଜନମିଛି କପଟରେ
ଅରେ ସଖି । ୧୦ ।

ଟେକ କୁଚ-କୁମ୍ଭ ଦୁଇ          ଟାଣଭରେ ଟେକ ହୋଇ
ଟିକାଏ ଦୃଷ୍ଟି-ସୂର୍ଯ୍ୟଙ୍କୁ ଚକ୍ରବାଡ଼ ପ୍ରାୟେ ନ ଦେଖାଇ ମହୀ
ଅରେ ସଖି । ୧୧ ।

ଠାବ କଲି ଏତେ କାଳେ          ଠିକ ରାଜଯୋଗବଳେ
ଠଣ ପଦ୍ମକୋଳେ ଖଞ୍ଜନ ଯୁଗଳ ଖେଳବା ଦେଖିଲି ଡୋଳେ
ଅରେ ସଖି । ୧୨ ।

ଡାଳିମ୍ବବୀଜ-ଦଶନୀ          ଡମ୍ବରୁ-ମଧ୍ୟା-ଶୋଭନୀ
ଡମ୍ବର କରି ଡାଳିମ୍ବନେତେ ପିନ୍ଧି ମଣ୍ଡି ଯାଉଛି ମେଦିନୀ
ଅରେ ସଖି । ୧୩ ।

ଢମ କହୁନାହିଁ ତୋତେ          ଢଳ ଅନାଇଲା ମୋତେ
ଢାଳ ଶୃଙ୍ଗାଣୀ ଭାବ ଦେଇ ମନକୁ ନେଲା ସଙ୍ଗତେ ସଙ୍ଗତେ
ଅରେ ସଖି । ୧୪ ।

ଆହା ସେ ରଙ୍ଗ ଅଧର          ଅନଙ୍ଗ ଅମୃତ ଧର
ଅରୁଣ କୋଳେ ଚନ୍ଦ୍ରକଳା ରହିଲା ପ୍ରାୟେ ହସରେ ସୁନ୍ଦର
ଅରେ ସଖି । ୧୫ ।

ତରୁଣୀ-ମଣି ସେ ରାମା          ତିନିଲୋକ-ସୁଖ-ସୀମା
ତାହାକୁ ସେହି ଉପମା ଯାହା ଯେନ କାମର ମହା ଗରିମା
ଅରେ ସଖି । ୧୬ ।

ଥରକୁ ଥର ବଳବା     ଥିରେ ତା କେତେ କଳବା
ଥଳପଦ୍ମ ତୋଳ ବାନ୍ଧିଲା ପ୍ରାଏ ଦଶଇ ପାଦ ଗୁଳବା
ଅରେ ସଖି । ୧୭ ।

ହଣୁଥିଲା ବନ୍ଧୁ ଦୂରେ     ଦେଖୁ ଦେଖୁ ହେଲା ପୁରେ
ଦେହ ଅଦେହ ଦେହ କରିଗଲା ସେ ଅନାଇବା ମାତ୍ରକରେ
ଅରେ ସଖି । ୧୮ ।

ଧନ୍ୟ ସେ ଭ୍ରୂଭଙ୍ଗିମା     ଧନ୍ୟ ନେତ୍ର ସୁରଙ୍ଗିମା
ଧନୁଶର ଧରି ମଦନ ଚଳିଲା ପ୍ରାଏ ସେ ତରଙ୍ଗିମା
ଅରେ ସଖି । ୧୯ ।

ନୟନେ ମୋର ରହିଲା     ନିର୍ମଳ ସୁଖ ସେ ଦେଲା
ନାନା ସୁବିଦ୍ୟା ଅଙ୍ଗରେ ଥିବାପ୍ରାଏ ଲେଶେ ତ ଭାସି ନୋହିଲା
ଅରେ ସଖି । ୨୦ ।

ପରମାନନ୍ଦ ସମ୍ପଦ     ପାଇଲା ପ୍ରାଏ ମନ୍ଦ
ପରମେଶ୍ୱରଙ୍କ ମହିମାରୁ ଆଜ ପାଇଲା କି ଯୋଗେ ସ୍ୱଚ୍ଛ
ଅରେ ସଖି । ୨୧ ।

ଫୁଲ୍ଲ-ତିଲ-ଫୁଲ ନାସା     ଫୁଲାଇ କହିବା ଭାଷା
ଫେଡ଼ି କି କହିବ ଶୁଣିଲାରୁ ମୋର ଦେଲା ସୁରଗୁରୁ ଦଶା
ଅରେ ସଖି । ୨୨ ।

ବଡ ଲୋକ ତାକୁ କଲ     ବିକ ହେଲା ପ୍ରାଏ ହେଲ
ବିଷମଶର ଏତେକେ ବନ୍ଧ ଯେନ ଅଇଲା ଏଠାକୁ ବୋଲି
ଅରେ ସଖି । ୨୩ ।

ଭାଗ୍ୟେ ଥିଲା ମୋର ଯେତେ  ଭଲେ ଅନାଇଲ ମୋତେ
ଭବଭୟଭୟ ଭାବିବାକୁ ତାହା ଭରସା କରଛୁ ତୋତେ
ଅରେ ସଖି । ୨୪ ।

ମହାଯୋଗେ ଯୋଗୀ ଥିବ  ମୁହୂର୍ତ୍ତେ ତାଙ୍କୁ ଦେଖିବ
ମହତ କଣ କହୁଛୁ ମହାଦେବ ସଦ୍ୟ ମୁଖୁଁ ନ ବର୍ତ୍ତିବ
ଅରେ ସଖି । ୨୫ ।

ଯୁବତୀ ଜନଙ୍କ ସଙ୍ଗେ  ଯାଉଥିଲା କଥାରଙ୍ଗେ
ଜାତି ପଦ୍ମିନୀ ଅଙ୍ଗ ସଉରଭକୁ ବେଢ଼ିଥିଲେ ପାଶେ ଭୃଙ୍ଗେ
ଅରେ ସଖି । ୨୬ ।

ରମଣୀ-ମଣି ସୁଶ୍ରୋଣୀ  ରଚିଛି ରୁଚିର ବେଣୀ
ରଣରଙ୍ଗଙ୍କ ରଣ-ରଥଶିରେ କି ନୀଳପତାକା ମଣ୍ଡଣି
ଅରେ ସଖି । ୨୭ ।

ତିଲକିଛି କସ୍ତୁରୀ ରେଖ  ଲଲାଟର ଦୁଇପାଖ
ଲଳିତ ଅଳକାବଳି କି ଘେନି ସେ ମୁଖ ଦେଉଛି କି ସୁଖ
ଅରେ ସଖି । ୨୮ ।

ବିଧାତା ବଡ଼ ହୁଡ଼ିଲା  ବିବେକ ପଣ ଛାଡ଼ିଲା
ବସୁଦେବ ପୁଅ ବାସୁଦେବଙ୍କୁ ତ ବେଳୁ ଏହା ନ ଯୋଡ଼ିଲା
ଅରେ ସଖି । ୨୯ ।

ସର୍ବ ଅଙ୍ଗେ ଶୋଭା ଶିରୀ  ସମ ହୋଇଅଛି ପୂରି
ସର୍ବାଙ୍ଗ ଅଳଙ୍କାରକୁ ସୁନ୍ଦରତା କରଅଛି ସେ ସୁନ୍ଦରୀ
ଅରେ ସଖି । ୩୦ ।

ସତେହେ ଏମନ୍ତ ହେବ ଶୁଭଯୋଗ ଯେବେ ଥିବ
ଶଶୀ-ଶେଖର ଦୟା କଲେ ଅବା ସେ ଶଶୀମୁଖୀ ଦେଖାଦେବ
ଅରେ ପକ୍ଷି । ୩୧ ।

ଶୁଣି ହସି କହେ ଦୂତୀ ସେ ବୃଷଭାନୁ-ଦୁହିତୀ
ସେହି ତ ତୁମ୍ଭଙ୍କୁ ଦେଖିବା ନିମନ୍ତେ ମନ କରିଥାଇ ନିତି
ଅହେ କାହ୍ନୁ । ୩୨ ।

ହର ଗଉରୀ ପୂଜଇ ହୃଦେ ତୁମ୍ଭଙ୍କୁ ଭଜଇ
ହଂସଗମନୀ ତୁମ୍ଭ କଥା ଶୁଣିଲେ ସମସ୍ତ କଥା ତେଜଇ
ଅହେ କାହ୍ନୁ । ୩୩ ।

କ୍ଷେମେ ବିଜେ କର ଧୀରେ କ୍ଷୋଭ ନ ଧର ମନରେ
କ୍ଷେମେ ଦୀନକୃଷ୍ଣ ବୋଲେ ଭେଟ ଦେବ ଛାୟାପତି-ସୁତାଧାରେ
ଅହେ କାହ୍ନୁ । ୩୪ ।



# ଅମୃତନିଧି ଚଉତିଶା

ରାଧାଦର୍ଶନ ଚଉତିଶା ପରି ଅମୃତନିଧି ଚଉତିଶା ମଧ୍ୟ ଦୀନକୃଷ୍ଣଙ୍କ ମଧୁର ପ୍ରୀତି-ରସର କବିତା । ପ୍ରେମିକ ଚୂଡ଼ାମଣି ରସରାଜଶେଖର ଶ୍ରୀକୃଷ୍ଣଙ୍କ ପ୍ରେମାମୃତମୟ ହୃଦୟ ଶ୍ରୀରାଧାଙ୍କ ବିମୋହନ ଅଙ୍ଗଲାବଣ୍ୟର କବିତ୍ୱନୋଚିତ ଅପାର ତୁଳନାରେ ବ୍ୟଥା ପାଇ ଏହି ଚଉତିଶାର ପ୍ରତି ଛନ୍ଦରେ ବିଗଳିତ ହୋଇ ବହିଗଲାପରି ବୋଧ ହୁଏ । ଧନ୍ୟ ଦୀନକୃଷ୍ଣ! ଧନ୍ୟ ତୁମର ଭକ୍ତିମୟୀ କବିତା-କଳା! ଭଗବାନ୍ କୃପା ବଶତଃ ତୁମର କଣ୍ଠାଳଙ୍କୃତ ହୃଦୟ ବିମଳ ଭକ୍ତି-ରସରେ ଭରପୂର ହୋଇ ନ ଥିଲେ କବିତାର ଏ ସୁଧାଧାର ଆଜି ଉତ୍କଳର ମନପ୍ରାଣ ଅପ୍ଲୁତ କରିବାର ସୁଯୋଗ ଘଟି ନ ଥାନ୍ତା ।

କାଳିନ୍ଦୀକୂଳେ ରାଧାଙ୍କୁ ଦେଖି
କୃଷ୍ଣ ବୋଲନ୍ତି ରେ ପ୍ରିୟସଖି!
କେ ବୋଲଇ ତୋତେ ପ୍ରଫୁଲ୍ଲ କମଳ
କନକ ଦର୍ପଣ ଚନ୍ଦ୍ରମୁଖୀ ରେ
ପ୍ରାଣସଖି !
କି ତାହାର ଅଞ୍ଜନରୁ ନାହିଁ ଆଖି ରେ ।
କି ତୋ ଭ୍ରୂଭଙ୍ଗୀ ଗୃହିଣୀ ନାହିଁ ଦେଖି ରେ ।
କର୍ଣ୍ଣେ ଏହା ଶୁଣି ହୋଉଥାଇ ଦୁଃଖୀ ରେ ।୧।

ଖଳ ଲୋକଙ୍କର ଖଳ ବୋଲ
କ୍ଷଣେ ହେ ସଂସାରେ ନୋହେ ଭଲ
ଖଞ୍ଜନ୍ତି ପଣ୍ୟ ତୋହୋର ପ୍ରାପ୍ତେ କାଚ
କାଞ୍ଚନ ସଙ୍ଗତେ କରି ଭୁଲ ରେ
ଜୀବଧନ!
ଖୋଜ କହିବି କେତେ ମୁଁ ସେ ବଚନ ରେ

ଖେଦ ଲଭୁଥାଇ ଏହି ଯେନ ମନ ରେ
ଖୀରୋଦଜ ! ତୋ ମୁଖକୁ କେ ସମାନ ରେ । ୨ ।

ଗୁରୁଯଉବନା ! ଏବେ ଶୁଣ
ଗୁଣିଲେ ତାହାଙ୍କ ଅବଗୁଣ
ଗଗନ-ନକ୍ଷତ୍ର ପ୍ରାୟେ ନ ସମ୍ଭବ
ଅଧିକ କହିବା କି କାରଣ ରେ
ଗୁଣନିଧି !
ଗୁଣି କହିବି ତାହାଙ୍କ ଗତିବିଧି ରେ
ଗଲା ଜଳକୁ ଯେ ପଦ୍ମ ତପ ସାଧି ରେ
ଗାଢ଼େ ଶିଶିର ତାହାକୁ ଦେଲା ବାଧି ରେ । ୩ ।

ଘର୍ମକର-କର-ତାପ ସହି,
ଘୋର ତପସ୍ୟା ବଳରୁ ସହ୍ମି
ଘଟେଣି-ଅନନୀ ଶ୍ରୀଅଙ୍ଗ-ସୁବାସ
ଦେଲା କଷ୍ଟ ଏବେ ଅଷ୍ଟ ବହି ରେ
ଘନସ୍ତନ !
ଘସ୍ରେ ବିକାଶ ହୁଅଇ ଏହି ଯେନ ରେ
ଘୃଷ୍ଟିଯାଇ ଶୋଭା କାହିଁ ନଶିଥିଲା ରେ
ଘଡ଼ି ତ ନ ରହଇ ତା ଯେନାଯେନ ରେ । ୪ ।

ଙକଷରେ ଆଗ କଷି ହୋଇ.
ଙଅଁ ରେ ଝାସେ ସୁବର୍ଣ୍ଣ ଯାଇଁ
ଙରହାଥେ ପଡ଼ି ଦର୍ପଣ ହୋଇ ତ
ମନକୁ ତର୍ପଣ କଲା ନାହିଁ ରେ

ନତମ୍ବିନ !

ନଷ୍ଟେ ନାଶ ଯାଇ ହେଲେ ଅଭିମାନୀ ରେ
ନିସ୍ତେଜ ତୋହୋ ମୁଖ ଛାୟା ଘେନ ରେ
ନୋହୁ କଉଁ କାଳରେ ତୁ ସୁଖଦାୟୀ ରେ । ୫ ।

ଚତୁରୀମଣି! ତୁ ଶୁଣ ଏବେ
ଚକ୍ରଧର ବେଶ ଧର ପୂର୍ବେ
ଚ୍ୟୁତ ହେଲା ପୁଣ୍ଡରୀକ ବାସୁଦେବ
ପରାଏ ହୋଇଲା ଚନ୍ଦ୍ର ଏବେ ରେ
ଚଞ୍ଚଳାକ୍ଷି !
ଚାରୁବଦନକୁ ହେବ ବୋଲି ଲକ୍ଷ ରେ
ଚକ୍ଷୁଅଗେ ହରିଣକୁ ବହିଅଛୁ ରେ
ଚିତ୍ତମୋହିବା ଚାତୁରୀ ନାହିଁ କିଛି ରେ । ୬ ।

ଛଟକ ଚାହାଣୀ ଭାବ ତୋର
ଛଇଳ ମୋହନ ସୁଖଘର
ଛର କରଇ ଯେ ମଦନ ଶରକୁ
ଆଉ କଥା ଅବା କେତେ ଦୂର ରେ
ଛୀଣୋଦରି !
ଛଳ କହି ବସିଲେ ତୋ ନେତ୍ରଶିଖୀ ରେ
ଛୁଡ଼ିଯିବ ସିନା ଚନ୍ଦ୍ର କଥା ତୋଷି ରେ
ଛୀରେ ଘୃତ ପରାୟେ ଯେ ଅଛି ପୂରି ରେ । ୭ ।

ଯାହା ଚନ୍ଦ୍ର ପକ୍ଷେ କ୍ଷୀଣ ହୋଏ,
ଜାଣିଲେ ସେହିଟି ଦଣ୍ଡ ପାଏ

ଯାମିନୀ ଜ୍ୟୋତି ଦିବସରେ ନ ଥାଇ
ଛତ୍ରି ଭେଦେ ରାହୁ ଘାତ ପାଏ ରେ
ଜାଣୁମଣି !
ଜଳନିଧିସୁତ ପଣେ ବହୁ ଅଣି ରେ
ଯାହିଁ ମହାଦେବ ଶିରେ ହୋଏ ମଣି ରେ
ଯୋଗ୍ୟ ନୋହିଲେ ନେମାକୁ ମୁଖଠାଣି ରେ ।୮।

ଝସକେତୁସଖା ଭାବେ ଥାଇ,
ଝିମନ୍ତେ ଉପ୍ରୋଧ କରେ ନାହିଁ
ଝାଡ଼ ଅନଳ ଚନ୍ଦନକୁ ଦହିଲା
ପ୍ରାପ୍ତେ ପଦ୍ମନାଭ ନ ଚେତଇ ରେ
ଝଲଗୋର !
ଝୁରୁଥାଇ ତୋ ମୁଖକୁ ନୋହି ସର ରେ
ଝାସଇନ୍ତି ପ୍ରତଦନେ ସିନ୍ଧୁବାର ରେ
ଝଗଡ଼ୁଛି ତା ମନକୁ ଅନୁସର ରେ ।୯।

ନିରନ୍ତରେ ଏକା ଭ୍ରମୁଥାଇ,
ନ ରହଇ କାହିଁ ଥିର ହୋଇ
ନଷ୍ଟେ ଜାଣିଲି ଯେ ଜନମୁଁ କୁଟିଳ
ନିନ୍ଦାରୁ ତାହାର ଭୟ ନାହିଁ ରେ
ନତଅଙ୍ଗି !
ନତଭ୍ରୂଛଦନୁଁ ତୋର ମୋର ସଙ୍ଗୀ ରେ
ନାନା ଭାବେ ଭୁ ମୋତେ କରନ୍ତୁ ରଙ୍ଗୀ ରେ
ନୂଛି ଯାଇ କି ନା ତୋର ଭ୍ରୂଭଙ୍ଗୀ ରେ ।୧୦।

ଟେକ ତୁ ଗୃହିଁଲେ ତୁରୂଲତା
ଟଳଯିବେ ମନ୍ଦା ଊର୍ଦ୍ଧ୍ୱରେତା
ଟେକେ କନ୍ଦୁଷ୍ଟ ଦମ୍ଭକୁ ଅବଲମ୍ବ
କରବ କେ ଏଡ଼େ ବବେକତା ରେ
ଟେକସ୍ତନା !
ଟାଣ କବମାନେ ହୋଇ ହୃଷ୍ଟମନା ରେ
ଟେକଥାନ୍ତ କାମଦେବଧନୁ ସିନା ରେ
ଟାହ୍ନ ପ୍ରାପ୍ୟେ ତାଙ୍କ ବୋଲ ନୁହଇ ନା ରେ । ୧୧ ।

ଠାବ କଲ ଏତେ କାଲେ ଅସି
ଠିକେ ଯେ ଜଳରେ ଯାଏ ଭସି
ଠୂଳ ଭପ୍ୟେ ସବୁ ଅବଲମ୍ବ କଲ
ପ୍ରାପ୍ୟେ କବ ହେଲେ ସବୁଭାଷୀ ରେ
ଠାକୁରାଣି !
ଠାବ କର ତୋ ଅଙ୍ଗକୁ ପୁଣ ପୁଣି ରେ
ଠେସି ପକାଇଲି ଏବେ ତାଙ୍କ ବାଣୀ ରେ
ଠିଅ ହେବାକୁ ତାଙ୍କର ନାହିଁ ଅଣି ରେ । ୧୨ ।

ଡକାଇତ ପ୍ରାପ୍ୟେ କବସାତ
ଡ଼ୋଲେ ଦେଖୁ ଦେଖୁ ନ ଚଳନ୍ତ
ଡାକୁଥାନ୍ତ ମୋର ଡ଼ୋଲାପ୍ରତିମାକୁ
ଖଞ୍ଜନ-ହରଣ-ମୀନ-ନେତ୍ରୀ ରେ
ଡ଼ୋଲେଶ୍ୱରୀ !
ଡ଼େଉର ହୋଏ ରୋମ ଏହା ଶୁଣି କର ରେ

ତହେ ଅଙ୍ଗକୁ ସେ ବୋଲ ଯେଡ଼େ କର ରେ
ଡ଼ଙ୍କ ଲାଗିଲେ ନୋହିବ ଏତେ ସର ରେ ।୧୩

ତମ କଥ କହୁ ନାହିଁ ସଖି !
ଡ଼ାକ ଅନାଇଲେ ଯଉଁ ଆଖି
ତୋକନ୍ତି ଅମୃତ ଆସ୍ୱାଦନ୍ତି ପ୍ରାୟେ
ମନକୁ କରଇ ମହାସୁଖୀ ରେ
ଡ଼ାଲନେତ୍ରି !
ଡ଼ାଳେ ତୋହୋ ଯେନ ସିନା କାମ ଛନ୍ଦୀରେ
ତମପଣେ ଧରଥାଇ ଫୁଲପତ୍ରୀ ରେ
ଡାଳବାକୁ ଦମ୍ଭକୁ ସେ ମହାମନ୍ତ୍ରୀରେ ।୧୪।

ଏକଥା ନୋହଇ ଅପ୍ରମାଣ,
ଆନନ୍ଦ-ଦାୟିନି! ଏବେ ଶୁଣ
ଅଉଯାର ତୋର ନୋହିଥିଲାକୁ ଟି
ମହାଦେବଠାରେଗଲାପ୍ରାଣ ରେ
ଅଲକ୍ଷନା !
ଏବେ ତୁ ତାହାର ମୃତ୍ୟୁସଞ୍ଜୀବନୀ ରେ
ଏହି ନୟନଦ୍ୱାରେଟି ତାହା ଚହିରେ
ଆଜ୍ଞ ଅଛୁ ନିଜ ତୋର ପରି ଦାମାରେ । ୧୫ ।

ତୋ ନେତ୍ରତରଙ୍ଗ ହାବ ଭାବ
ଭୁଛ ଜୀବ ସ୍ଥିର କାହିଁ ହେବ ?
ତେରଛେ ଶୃହିଁବା କି କହିବା ଯହିଁ
ବ୍ରହ୍ମାପାଏ କାମ ପରାଭବ ରେ

ନିବଳନ !

ତୋହୋ ନୟନର ଯଉଁ ଘେନାଘେନ ରେ
ତାହା କହିବ କଉଁ ଯୋଗ୍ୟତା ଘେନ ରେ
ତେଡ଼େ ଭାଗ୍ୟ ମୋର କାହିଁ ଅଛୁ ଧନା! ରେ ।୧୬।

ଥିରିମଧେ ଦମ୍ଭ ହତ ବାନା
ଥିବ ତ ନାହିଁ ଏ ନେତ୍ରବନା
ଥମ୍ଭନ ମୋହନ ବଶ ଉଚ୍ଚାଟନ
ସାଧ କରିବାକୁ ଏହି ସିନା ରେ

ଥିରଗତ !

ଥରେ ଥରେ କରଇ ଏ ଯଉଁ ଗତି ରେ
ଥାଣୁ ଦେଖି କାମେ ହେବ ଛନ୍ଦବନ୍ଧ ରେ
ଥାଉ ଆଉ ଲୋକର ବା କେତେ ଥାଟି ରେ ।୧୭।

ଦେଖିଲେ ଯେ ହୋଏ ସୁଖକର
ଦେଇ ସିନା ତାକୁ ପଟାନ୍ତର
ଦୂରେ ଥାଇ କବ ବଚନ କହୁଛି
ତୋ ନେତ୍ର ନଷ୍ଟେ ବୈକୁଣ୍ଠପୁର ରେ

ଦିବ୍ୟଗୋଚର !

ଦଇବେହେଁ ତ ବସ୍ତୁର ମନୋହାରୀ ରେ
ଦୃଷ୍ଟାନ୍ତଦୃଷ୍ଟା ଥିଲେ ଦେଖିପାରି ରେ
ଦୁଖ ଅଛୁ ବୋଲି ମନେ ନ ବିଚାର ରେ ।୧୮।

ଧଳା କଳା ରଙ୍ଗେ ଶୋଭା ପାଏ
ଧାତା ହରି ହର ସଙ୍ଗ ପ୍ରାୟେ

ଧନ୍ୟ ଧନ୍ୟ ତାର ଜନମର ଭାଗ୍ୟ
ଯାହାର ଏ ଦରଶନ ହୋଏ ରେ
ଧୂର୍ତ୍ତଧ୍ୱଂସି !
ଧରଣୀରେ ତୋର ନେତ୍ର ପରଶଂସି ରେ
ଧୀର ହୋଇ ଏହା ଶୁଣୁଥିବା ବସି ରେ
ଧର୍ମ- ଅର୍ଥ- କାମ- ମୋକ୍ଷ- ଫଳଦୃଶୀରେ । ୧୯ ।

ନରତେ ବଢ଼ାଇ ପ୍ରେମପ୍ରୀତି
ନ ଛଡ଼ଇ ଅନୁରାଗ ଜାତି
ନଷ୍ଟେ ଜାଣିଲି ରେ ନଯୂନ-ପ୍ରତିମା
ତୋ ନେତ୍ର ନାଗରୀ ରସବତୀ ରେ
ନବଯୁବା !
ନାନା ଗତିରୁ ଏ ନୃତ୍ୟକାରୀ ଅବା ରେ
ନୀଳକଣ୍ଠଠାରେ କର ପୂର୍ତ୍ତି ସେବା ରେ
ନରଲୋକରେ ଏହି ଶୋଭା ଦେଖୁଥିବା ରେ । ୨୦ ।

ପଡ଼ିଲେ ଏ ନେତ୍ରେ ନେତ୍ରଗତେ
ପ୍ରତେ ହୋଉଥାଉ ମନେ ଏତେ
ପାକଶାସନ- ସଖିରଙ୍କ ପ୍ରଶଂସା
କରୁଥାନ୍ତି ଲୋକେ କ ନମନ୍ତେ ରେ
ପ୍ରାଣମଣି !
ପରମାନନ୍ଦ ସୁଖକୁ ଦେବା ଅଣିରେ
ପ୍ରତିକ୍ଷଣେ ଦହଇ ଏ ନେତ୍ରଠାଣିରେ
ପ୍ରତି ଅଙ୍ଗ ପୁଲକାଇ ପୁଣ ପୁଣିରେ । ୨୧ ।

ଫୁରୁଚ୍ଛି ମନରେ ଆସି ଯେତେ
ଫେଡ଼ି ତା ଅବା କହିବ କେତେ
ଫାଇ ଲମ୍ଫ ପାଇ ତରଙ୍ଗ ଭାବରୁ
କ୍ଷୀରସିନ୍ଧୁ ପ୍ରାପ୍ତେ ହୋଏ ପ୍ରତେ ରେ
ଫୁଟମୁଖି !
ଫୁଲ୍ଲ ଅରବିନ୍ଦେ ଫୁଲଲିଠ ଦେଖି ରେ
ଫୁରୁଣାରେ ଲକ୍ଷି କବି ହୋଏ ସୁଖୀ ରେ
ଫଳ ଏ ବାହାରେ ଆଉ ନାହିଁ ସଖି ରେ । ୨୨ ।

ବିବେକ ଛାଡ଼ଇ ଯଉଁ ଜନ
ବଡ ହେଲେ ତାକୁ ବୋଲି ସାନ
ବିଗୃର ବିଗୃର ବୋଲନ୍ତି ତୋ ନେଣ
ଖଞ୍ଜନ ଚକୋର ମୃଗ ମୀନ ରେ
ବରାଙ୍ଗନା !
ବିକୁ ହାଣି ହୋଏ ଏହା ଶୁଣି ସିନାରେ
ବ୍ରହ୍ମା ଯାହା ଦେଖି ହେବ ହତମନା ରେ
ବଚନରେ ତାହା କର ଏତେ ଅନା ରେ । ୨୩ ।

ଭାବ ନ ଜାଣଇ ଯଉଁଲୋକ
ଭଲ ମନ୍ଦ ତାର ହୋଏ ଏକ
ଭେଖୀ ଭ୍ରମର ଠାରୁ ଜଣାଗଲା ସେ
ଅଧିକ କହିବା କଉଁ ଠେକ ରେ
ଭାବନିଧି !
ଭାବୁ ଥାଇ ଏହିକଥା ନିରବଧି ରେ

ଭ୍ରମ ହେଲା କାହିଁପାଇଁ ଯାଚାବୃତ୍ତି ରେ
ଭଲ କଥାରେ ଅଭଲ କଲ୍ପ ସିଦ୍ଧି ରେ । ୨୪ ।

ମଦାଲସୀ ମୁଖ ନେତ୍ର ଛବି
ମୋହୋ ବୃତ୍ତି କେତେ ମୁଁ କହିବ ?
ମହାଯୋଗୀ ମହା ଦମ୍ଭ ଧରାଧର
ମର୍ଦ୍ଦିବାକୁ ଯେହ୍ନ ମହାପବି ରେ
ମନ୍ଦହାସି !
ମନେ ଏମନ୍ତ ସମ୍ପ୍ରତେ ହୋଏ ଆସିରେ
ମହାବନ୍ୟାରେ ଯମୁନା ବହେ ମିଶିରେ
ମହାସୁଖ ଉପରେ ଏ ସୁଖରାଶିରେ । ୨୫ ।

ଯେମନ୍ତ ମୋ ସଙ୍ଗେ ରାମ ଥିଲେ
ଜଗତ ଆନନ୍ଦ ହୋଏ ଭଲେ
ଜଗମୋହନ ! ମୋ ନେତ୍ରକୁ ତୋ ନେତ୍ର
ସେହିରୂପେ ଆଜ ସୁଖ ଦେଲେ ରେ
ଜୀବଧନ
ଯାହା ହୋଉଛୁ ଏବେହେଁ ମୋହୋ ମନ ରେ
ଯେବେ ସର୍ବଦା ହେବ ତୋ ଦରଶନ ରେ
ଯଦୁବଂଶେ ସମ୍ଭବା ମୋର ଧନ୍ୟ ରେ ।୨୬।

ରମଣୀମଣି ତୋ ସ୍ମିତବାଣୀ
ରଙ୍ଗିମା ଅଧର ଦନ୍ତଶ୍ରେଣି
ରୁଚ ରୁଚିର ଉଚିତ ପ୍ରଶଂସା
ଲୁହାଇ ନ ଦେଲା ନେତ୍ର ଅଣି ରେ

ରସିକନନ୍ଦ !

ଭାଗବନ୍ତ କୃଷ୍ଣ ଗୁଣ ଭାବ ଘେନ ରେ
ରତ୍ନ ପକ୍ଷପାତେ ସେନା ହୋଇ ମାନାରେ
ଭିନ୍ନ ଦିବସ ଏ ମୋର ସୁଖଦାଜା ରେ । ୨୭ ।

ଲଳିତ ଲୋଲ ମହିମା ଯେତେ
ଲକ୍ଷିବାକୁ ଦିଶୁ ନାହିଁ ମୋତେ
ଲୋଭ କରି ମୃଗତୃଷ୍ଣା ତଡ଼ିତକୁ
ବୋଲିବା କଥା ହିଁ ଅବା କେତେ ରେ

ଲୀଳାବନ୍ତ !

ଲାଗିଥାଉ ମୋତେ ଏ ନୟନ-ପ୍ରୀତିରେ
ଲୋକନାଥ କରିଥାଉ ଏହି ମତି ରେ
ଲାଭ ଏ ବାଦାରେ ଅଉ ନାହିଁ କ୍ଷତି ରେ । ୨୮

ବାସୁଦେବ-ସ୍ନେହବାଣୀ ଶୁଣି
ବୋଲେ ବ୍ରଜବଧୂ-ଶିରୋମଣି
ବେଭାରେ ରସିକ ନାଗର ରସନ୍ତୁ
ଗୁଣବନ୍ତ ନାରୀ ଭାବ ଅଣି ହେ

ବନମାଳୀ !

ବଡ଼କର ଯେତେ ସ୍ତ୍ରୀ ଫୁଲ ପାଳ ହେ
ବଟେ ତେତେ ରୂପେ ସୁଖ ଭୋଗ କେଳ ହେ
ବଳ କହିବ ଅବା ତା କେତେ ଭାଳ ହେ । ୨୯।

ସୁମନା ସୁମନ ସୁମନସ
ସବୁ ରୂପେ ଯେବେ କରି ହୋଷ

ସୁଖ ସମ୍ପତ୍ତି ବନ୍ଧୁଜ କର ଭୋଗ
କରନ୍ତୁ ବିବେକ ସୁପୁରୁଷ ହେ
ଶ୍ୟାମଘନ !
ସବୁଦିନେ ଥିବ ଏହି ଅବଧାନ ହେ
ସପନେହେଁ ମନେ ନ କରିବ ଆନ ହେ
ସବୁକରି ମାଗୁଛି ମୁଁ ଏହି ଦାନ ହେ । ୩୦

ସରସ - ସନ୍ଦର୍ଭ - ଗର୍ଭ - ଭାବେ
ସନ୍ତୋଷେ ମେଲାଣି ହୋଅ ଏବେ
ଶ୍ରୀହରି ବୋଲନ୍ତି ସେବକ ଦେବା ତ
ଉଚିତ ନୋହଇ ପ୍ରଭୁଠାବେ ରେ
ସୀମନ୍ତିନୀ !
ସଙ୍ଗ-ଭଙ୍ଗ ବଞ୍ଚ ହୋଇ ନାହିଁ ହାନି ରେ
ସତ ନ ବଳେ, ନ ଚଳେ ପାଦ ବେନି ରେ
ସୁଧା ବରଷି ବଚନ ସୁଖ ଧେନି ରେ ।୩୧

ଶ୍ୟାମ ଶ୍ୟାମା ଏକଠାବେ ଦେଖି
ସଖୀ ଡାକନ୍ତି ରେ ପ୍ରାଣସଖି
ଶ୍ୟାମ-ମେଘରେ ତ ଅପୂର୍ବ ଥକତ
ବିଜୁଳୀ ପରିପ୍ରେ ଅଛି ଲାଖି ରେ
ସହଚରି !
ଶ୍ୟାମଅଭଙ୍ଗ-ପଞ୍ଜର ଆଣେ କରି ରେ
ସବୁ ଭଙ୍ଗୀକୁ ଦେଲୁ କି ଦୂର କରି ରେ
ଶୀଘ୍ରେ ଆସ ମୁଁ ଗଲିଟି ପଚାରି ରେ । ୩୨ ।

ହରି ବୋଲନ୍ତି ରେ ଗୋପାଙ୍ଗନା !
ହେଲୁ ତୁ ପବନ ପ୍ରାପ୍ତେ ପିନା
ହତ କଲୁ ଘନ ରସ ବରଷିବା
କଉଁ କାରଣରୁ ବଙ୍କମନା ରେ
ହାସ୍ୟବଳ !
ହାଥୁ ନେଲୁ ମୋ ଅମୃତରସାବଳ ରେ
ହୃଦେ ଏହି କଥା ନଜ୍ଜ ଥିଲୁ କଳ ରେ
ହର-ବଇରି ଶରେ ତୁ ହୋଅ ଦଳରେ । ୩୩ ।

କ୍ଷଇଲ ଗୋପୀ ହରଷେ ଗଲେ
କ୍ଷେମେ ଗୋପ ପରବେଶ ହେଲେ
କ୍ଷଣଦା କାଳେ ଛଛନ୍ଦେ କ୍ରୁଡ଼ିଲେ
କନ୍ଦର୍ପ-ଦର୍ପକୁ ବିନାଶିଲେ ସେ
କ୍ଷମାନିଧି
କ୍ଷନ୍ଦ ଗୋପୀ ଅଙ୍ଗେ ଅଭରଣ-ବିଧି ସେ
କ୍ଷିତମଣ୍ଡଳୀ ମୋହନୀ ମନ ବୋଧି ସେ
କ୍ଷେମେ ଦୀନକୃଷ୍ଣ ମନକାମ ସିଦ୍ଧି ସେ । ୩୪ ।



# ଅନୁରାଗ ରତ୍ନାକର ଚଉତିଶା

---

ଅନୁରାଗ ରତ୍ନାକର ଚଉତିଶାରେ ରସିକରାଜ କୃଷ୍ଣଚନ୍ଦ୍ରଙ୍କ ଅନୁରାଗର ଯେଉଁ ଉତ୍ତାଳ କଲ୍ଲୋଳ ଉଠିଅଛି ତାହାର ପଟାନ୍ତର ଓଡ଼ିଆ ସାହିତ୍ୟରେ ଅଛି କି ନାହିଁ ସନ୍ଦେହ । ଏ ଚଉତିଶା କ୍ଷୁଦ୍ର କବିତା ହେଲେହେଁ ଖଣ୍ଡ-କାବ୍ୟବତ୍ ଉତ୍କଳର ଜନ ମନ ହରଣ କରି ଉତ୍କଳ-ଭାରତୀଙ୍କ ଭଣ୍ଡାରରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିବ ।

### ରାଗ କାଳି

କାଳିନ୍ଦୀକୂଳେ   କଦମ୍ବମୂଳେ   କୃଷ୍ଣ ରାଧାଙ୍କୁ ଦେଖି
କୃପା ସାଗରେ   କହନ୍ତି ଆଗେ   ହେ ଚନ୍ଦ୍ରକାନ୍ତି-ମୁଖି !
କି ବୋଲି ତତେ   ବୋଲିବି ମତେ   ଏ କଥା କହୁ କିନା
କାଳିକ ଏହି   ଫଣସ୍ପୃହି   ହେଲି ଚଞ୍ଚଳମନା । ୧ ।

ଖୋଜି ଯେବେହେଁ   ବୋଲିବି ସ୍ନେହେ   ତୁ ମୋର ଫୁଲଗଭା
ଖଞ୍ଜନ-ଜିତ—   ନେତ୍ରି ! ହେବେ ତ   ଯୋକାଏ କାଳି ଶୋଭା ।
ଖରେ ଖପାଇ   ପକାଇ ଦେଇ   ଅଣଆଦର କରି
ଖୀଣ-ଉଦରି !   କନକ-ଗୋରି !   ଏହି କଥାକୁ ତରି । ୨ ।

ଗଳାର ହାର   ବୋଇଲେ ହାର   ପଦେ ରହସ୍ୟ କଥା
ଗୁଣ-ଗଭୀରି !   ହୃଦୟହାରି !   ହୃଦେ ହୁଅଇ ବଥା
ଗୁଣି ଗୁଣି ବା   ବୋଲିବି ମୋର   ଗନ୍ଧଫଳକ ତୁହି
ଗଲ୍ପ ସେ ଭାବ   ତିଳକେ ଯହୁଁ   ଛଳକେ ଅଛି ନାହିଁ । ୩

ଘେନାଘେନରେ ବୋଲିବ ଘନ— ସାର ଚନ୍ଦନ ମୋର
ଘଡ଼କେ ଶୁଖି ଝଡ଼ିପଡ଼ି ସେ ଅଙ୍ଗରୁ ହୋଏ ଦୂର ।
ଘୂର୍ଣ୍ଣାକ୍ଷରକେ ଅନ୍ତର ନୋହି ମହାସୁଖକୁ ଦେବ
ଘନଜଘନା ! ଘଟଣସ୍ତନା ! କହ ମୋତେ ଏ ଭାବ ।୪

ନେତ୍ରପ୍ରଭମା ବୋଲି ବୋଇଲେ ସହଜେ ନେତ୍ର-ସାର
ନିର୍ମଳ କର ସକଳ ଦେଖି ସବୁର ମନୋହର ।
ନୋହଇ ଅବ— ରଙ୍ଗ ବସ୍ତ୍ରାନେ ନିଜ ଦର୍ଶନ ସୁଖ
ନବକିଶୋର ! କନକଗୋର ! ଏହି ତ ବଡ଼ ଦୁଖ । ୫ ।

ଚତୁରୀମଣି ! ପରାଣମଣି ବୋଲିବା ଅଭ୍ୟାସଇ
ଚତ୍ୱରେ ଅସି ହଂସସ୍ପୃ ବସି ପୁଣି ତା ବିନାଶଇ
ଚନ୍ଦ୍ର ପଦର ବନ ବିହାର ହେବାର ଗୃହ ଯୁଗ
ଚଣ୍ଡାଳ ବିଧି କର ଯେ ନାହିଁ କ୍ଷଣେ ହେବା ବିଯୋଗ ।୬

ଛାଡ଼ ତୋ ସଙ୍ଗ ଯେବେ ଏ ଅଙ୍ଗ ରହଇ ହୋଇ ଭିନ୍ନ
ଛନେ କେମନ୍ତେ ବୋଲିବ ପ୍ରିୟେ ମୁଁ ମୀନ ତୁ ଜୀବନ ?
ଛିଦ୍ର ଦରଶୀ— ମାନେ ଯେ ହସି ଉଡ଼ାଇ ଦେବେ ଆଗ
କ୍ଷୁଦ୍ରା:ଘାତରୁ ଅଧିକ ହୋଇ ବାଧେ ତାହାଙ୍କ ବାଗ । ୭ ।

ଯେବେ ତନ୍ଦ୍ରମା ତବ ଚରଣୀ- ଠାରେ ନୂହନ୍ତା ହେଲା
ଜଗ-ମୋହନ ! ତେବେ ବୋଲନ୍ତ ମଦନ-ନଦୀ-ଭେଳା ।
ଯତନ କର ଯେବେ ବୋଲିବ ଦିବ୍ୟ ହଂସୁଳୀ ଭୁଲୀ
ଯୁବତୀ-ରତ୍ନ ! ସେ କୋମଳରୁ ତୋହୋ ଶ୍ରୀଅଙ୍ଗ ବଳ । ୮

ଝଷକେତନ କେଳିରତନ— ଭଣ୍ଡାର ଅବା କେତେ
ଝଳ-ଗଉର ! ବଚନିକର ତୁ ଦେଉ ଯେତେ ଯେତେ
ଝୀନବସନା ବଚନଘେନା ମହାପୃଥୁଳସ୍ତନା
ଝାସି ଅନେକ— ବାର୍ ସାଗରେ ତୋତେ ପାଇଛି ସିନା । ୯ ।

ଞଥନ ଧନ ବୋଇଲେ ମନ ଯେନଇ ଆନ ବାଟେ
ଞେଇ ବକବା ଦେହ ରଖିବା ବକ୍ଷରେ ସ୍ନେହ ତୁଟେ
ଞୋହିଲେ ଅବା ବୋଲିବ କାମ— ଧ୍ୱଜ ଜୟ ପତାକା
ଞବଢ଼ ଉଢ଼େ ପଛକୁ ପଡ଼େ ହୁଅଇ ଏହି ଦକା । ୧୦ ।

ଟଙ୍କଧରଙ୍କ— ବଇଷ୍ଟ-ଟୋପ- ଞଶ୍ରେଣୀ ଲକ୍ଷ ଦେଲେ
ଟାଣ ଦାରୁରେ ଞମୀଣ ସେହି ଯେତେ ଯତନ ଛ୍ହେଲେ
ଟେକେ ତୋ ଟେକ ଟେକଲେ କଣ୍ଟା ଟିକାଏ ହେବ ଶେଷ
ଟାହି ନୋହଇ ଞଡମ୍ବତ ! ମହେଶଙ୍କୁ ଅଶେଷ । ୧୧ ।

ଠଣମଧ୍ୟମା ! ସୁନ୍ଦରସୀମା ! ତୋହୋ ପରାଏ ତୁହି
ଠାଠିକ କର କହି ବସିଲେ ତୋତେ ସମାନ କାହିଁ ?
ଠାବ ନ କଲା ମନ ମୋହୋର ତିନ ଭୁବନ ଖୋଜି
ଠିକେ ତା କେତେ କହିବ ପାନ— କୃଷ୍ଣ ମାନସେ ହେଜି । ୧୨ ।

ଡାକ ବୋଲିବ ତୁ ମୋ ମାନସ- ମାନସ ରାଜହଂସୀ
ଡ଼େଲାର ତାହା ସେହି ଅବଳୀ— ସରେ ବହରେ ଅସି !
ଡାଳିମ୍-ବୀଜଜିତ— ଦଶନ ! ତେବେ ଅନ୍ତର ହେଲା
ଡମ୍ବରୁମଧ୍ୟା ! ବୋଇଲା କଥା ବ୍ୟର୍ଥ ହୋଇଗଲା । ୧୩ ।

ଢମ କହିବା ମନ ମୋହିବା ଏ ଅବା କଉଁ ଭଲ
ଢାଳେ ହେ ପ୍ରେମ ଲୋଭେ ଛଦ୍ମ ବୋଲ ତରଙ୍ଗ ଭୁଲ ।

ଛାଙ୍କୁଣି ଫେଇ ଫଣୀ ଖେଳାଇ ଗୀତ ଗାଇଲା ପ୍ରାୟେ
ଛଗଡମାଳ କପଟ କେଳ ପଛେ ଦହଇ କାୟେ ।୧୪।

ଆରତ ବୋଲ ଅନଙ୍ଗ ଗେଲ ଥୟେ ନୋହଇ ସଖି!
ଅଧଇର୍ଯ୍ୟରେ ଅନୁରାଗରେ ସମସ୍ତ ହୋଏ ଲେଖି
ଏବେ ବୋଇଲୁ ମୁଁ ମଉଫୁଲ— ଲଟ ତୁ ଫୁଲ୍ଲ ଫୁଲ
ଅରବିନ୍ଦରୁ କୁଟଜ ଯାଏ ଅଚର ଚୁମ୍ବି ଗେଲ ।୧୫।

ତପନ ପଦ୍ମ— ପ୍ରୀତି ଛଦ୍ମ ପ୍ରାୟେ ଲାଗିଲା ମୋତେ
ତୋଠୁରୁ ଆଉ ହେଲେ ଦହନ କରଇ କର ଘାତେ
ତାହାର ନାହା- ଠାରେ ହେ ଯାହା ତାହା କହିବ କେତେ
ତୁଚ୍ଛା ବୃନ୍ତିଟିରେ ସ୍ୱାଦ ଦବାରେ ମଧୁପ ଯେମନ ମାତେ । ୧୬

ଥୟ ନୋହଇ ଚନ୍ଦ୍ରମା କଇ- ରବର ଯେନାଯେନ
ଥାଇ ଏ ଜଳେ ସେ ଖ-ମଣ୍ଡଳେ ବହରେ ତାରା ଯେନ
ଥାପନ୍ତି କବି- ମାନେ ଏଥିକି ଏ ପ୍ରୀତି ଏତେ କଣ
ଥଳ ନ ପାଇ ଜଳେ କି ଜଳ— ଫେନ ଧଇଲେ ତଣ ? ୧୭

ଦେହ ପୁଲକ କେତେ ପୁଲକ ଅନ୍ତର କଣ ମଣି
ଦେଇ କି ଲକ୍ଷ ଥିଲେ ଦକ୍ଷ ଅନ୍ତର କଥା ଆଣି
ଦର୍ଶନ ସୁଖ ଶରୀର ଦୁଖ ସୁଖକୁ ହୋଏ ହେତୁ
ଦୂରେ ଅଦୂରେ ମଦନ ଶରେ ଅଛନ୍ତି ଏଥି ହେତୁ । ୧୮

ଧଇର୍ଯ୍ୟନାଥ! ମଦନ ବ୍ୟାଧି ଔଷଧ ଲେଖା କଲେ
ଧବଳକର କରେ ତାହାର ପ୍ରଭା ବଢ଼ଇ ଭଲେ
ଧୃତ-ଧ୍ୱଂସିନ ବୋଲିବ ତୁ ମୋ ହୃଦର ଦିବ୍ୟ ବୀଣା
ଧୀରବଚନ! ବଚନ ସଙ୍ଗେ ଭୁଲିଲେ ଅତି ଊଣା ।୧୯

ନିରନ୍ତରେ ହେ  ତୁ ମୋତେ ସ୍ନେହେ  ଦ୍ରବ କରାଉ ଯହିଁ
ନିଶ୍ଚେ ମୁଁ ଚନ୍ଦ୍ର-  ମଣି ତୁ ଚନ୍ଦ୍ର  ବୋଲି ବୋଲିବି କାହିଁ ।
ନିଶାରେ ବଧୂ  କରରେ ବଧୂ—  ମଣି ଆରଦ୍ର କରେ
ନବ-ତରୁଣି !  ରମଣୀମଣି !  ତୁ ନିଶି ଦିବସରେ । ୨୦ ।

ପଦ୍ମ-ସୁବାସି !  ପିୟୂଷଭାଷି !  ପରମ ସୁଖରାଶି
ପଡ଼ିଲ ମୋତେ  ପ୍ରମାଦ ତୋତେ  ଡ଼ାକିବା କଥା ଆସି
ପୀତ-ବସନା !  ପୀନଜଘନା !  ପୀବରସ୍ତନା ! ତୋତେ
ପିକବଚନା  ବୋଲିବାକୁ ତ  ଲାଜ ମାଡ଼ଇ ମୋତେ ॥

ଫୁଲ ସମସ୍ତେ  ତାର ଉଦୟେ  ପୟୋଦ କାଳେ ହତ
ଫେଡ଼ି ତା କେତେ  କହିବ ଯେତେ  ଅବଗୁଣରେ ଖ୍ୟାତ ?
ଫୁଟି ରହିତ  ଅବିକମ୍ପିତ  ବିରହୀ-ଦୁଖ ଦାୟୀ
ଫଳନ୍ତି ଏହି  ପୁଣି ଉଠଇ  ପଞ୍ଚପ୍ରାଣକୁ ଘେନ । ୨୧

ବିବେକ ଭଣା  ହୋଇବ ବୀଣା—  ବଚନ ବୋଲିବାରେ
ବେଭାରେ ରାଗ  ଘେନିଲେ ରାଗ  ହୁଅଇ ତାହା ଠାରେ
ବର୍ଣ୍ଣିଉଛାର  ପ୍ରେମ ପଞ୍ଚାର  ବିଶ୍ୱର ଛାର ନାହିଁ
ବାଜଇ କର—  ରୁଦ୍ର ପ୍ରହାର  ପାଇଲେ ପୁଣି ସେହି । ୨୩

ଭ୍ରୂଭଙ୍ଗୀ ଲୀଳା  କଟାକ୍ଷମାଳା  ଚନ୍ଦ୍ରରେ ନୋହେ ଦେଖି
ଭାବରେ ଘେନ  ଡାକନ୍ତି ଧନ !  ପୂର୍ଣ୍ଣ-ଚନ୍ଦ୍ରମା-ମୁଖୀ
ଭଜଇ କ୍ଷୀଣ  ମୃଗଲକ୍ଷଣ  ଦିବସେ ପଣ୍ଡୁଭାବ
ଭାଷା କହିବା  ମନ ମୋହିବା  ଭାଗ୍ୟକେ ତାକୁ ଦେବ ?

ମୃଗ-ଖଞ୍ଜନ-  ଚକୋର-ମୀନ—  ନେତ୍ରୀ ବୋଲିବା କଥା

ମୋହୋ ମନକୁ ଆସଇ ନାହିଁ ହୁଅଇ ମହାବ୍ୟଥା
ମଦନମଦେ ମାତି ତୁ ଯେତେ ବେଳେ ଘୂମାଇ ଶୁହୁଁ
ମହେଶ ଦମ୍ଭ ମହା-ଆରମ୍ଭ ଲେଶେ ରହିବ କାହୁଁ ? ।।

ଯୋଗୀନ୍ଦ୍ରମାନେ ଯୋଗ ଆସନେ ନିଶ୍ଚଳେ ଥିବେ ବସି
ଯେବେ ତୁ ହେଲେ ଶୁହିଁକୁ ଡ଼ୋଲେ ମଧୁର ମନ୍ଦ ହସି
ଯିବ ତରଳ ଅଙ୍ଗ ଆବଳ ଅନଳ ଜଉ ପ୍ରାୟେ
ଯିବ କି ଜୟେ କେବେହେଁ ଲୟେ ଜୀବନ ଥିବାଯାଏ । ୨୭

ରୋଲମ୍ବ ଚୁମ୍ବେ ବଧୂଲୀ ବିମ୍ବେ ପତଙ୍ଗ ଚଞ୍ଚୁ ଲାଗେ
ରଙ୍ଗର ଭଙ୍ଗ ହୋଏ ପତଙ୍ଗ ଦିବସ ମଧ୍ୟଭାଗେ
ରତନ ମଧ୍ୟେ ପ୍ରବାଲ ପଦ୍ମ- ରାଗ ମାଣିକ୍ୟ ଲେଖି
ରଙ୍ଗ-ଅଧର ପ୍ରାୟେ ତୋହୋର ଶୋଭା କାହିଁ ନ ଦେଖି ।

ଲକ୍ଷ୍ୟ ହିଁ ଅବା କି କରି ଦେବା ବିବେକ ଦୂର କରି
ଲକ୍ଷଣବନ୍ତ ହୋଇ ଅମୃତ ଅଛୁ ତହିଁରେ ପରି
ଲୋଡ଼ ମୋ ବୁଦ୍ଧି ଲାବଣ୍ୟନିଧି ସିଦ୍ଧି କରିବ କାହିଁ
ଲୋକପାଳଙ୍କ ବେଳୁଁ ଏତେକ ବିଚାର କରି ନାହିଁ ।୨୮।

ବଲ୍ଲଭ! ତୋର ବିନୁ କର୍ପୂର ଚନ୍ଦନ ଆଦି ଯେତେ
ବିଷ ପରାୟେ ପରତେ ହୋଏ ଆଉ କହିବ କେତେ
ବଡ଼ ସମ୍ପତ୍ତି ଥିଲେ ନୃପତି ଅଭାବେ କିଛି ନୋହେ
ବିଷ୍ଣୁ-ଭଗତି ବିନୁ ଅଗତି ଲୋକ କେବେହେଁ ଶୋହେ?

ଶ୍ରୀଧର-ବାଣୀ ଶୁଣି ରମଣୀ— ମଣି ବୋଇଲେ ହସି
ସରାଗ ଚିତ୍ତେ ଡ଼ାକିବ ମୋତେ ଆସ ଗୋ ରାଧା ଦାସି!

ଶ୍ରୀକର ଧର | ମାଗୁଛି ବର | ଏତିକ ଆଜ୍ଞା ଦେବ
ଶ୍ୟାମ ସୁନ୍ଦର | ତୁମ୍ଭ ପଯ୍ୟର | ସେବାରେ ଦିନ ଯିବ ।୩୦।

ସହସ୍ର-କର— | କର ଅମର— | ଗିର ଛୁଇଁଲା ପ୍ରାୟେ
ଶ୍ରୀମୁଖୁଁ ମୋର | ନେଇ ଅନ୍ତର | ନୋହିବ ଥିବା ଯାଏ
ସବୁର ମୁଖେ | ବୋଲିବେ ସୁଖେ | ରାଧା ଶ୍ରୀକୃଷ୍ଣ ଏକ
ଶ୍ରୀ ବୃନ୍ଦାବନ— | ମୃଗରାଜନ ! | ନେଉଡ଼ା ମୋ ଏହିଠେକ ॥

ଶ୍ରୀମୁଖେ ଯେତେ | କହିଲ ମୋତେ | କରୁଣାମୟ ବୋଲି
ସବୁ ପ୍ରକାରେ | ଏ ମହିମାରେ | ସହଜେ ବଡ଼ ହେଲି
ସାମନ୍ତ ଯେନା— | ଯେନ ଭାବନା | ସହଜେ ଏହି ମତ
ସାର ରତନ— | କେବେକେଁ ଅନ | କରେ ଝଁଟେକ ଜ୍ୟୋତ ॥

ହରଷ ଭରେ | ପ୍ରେମ ବଶରେ | ରାଧା ମାଧବ ବେନି
ହରିଲେ ନିଶି | ପଲଙ୍କେ ବସି | କହି ଏ ଯେନାଯେନି
ହୃଦ ସାରସ | କର ବିକାଶ | ନିତ୍ୟ କର୍ମକୁ ଗଲେ
ହର ବିଗରେ | ହଂସ ରଥରେ | ବସି ବିଜୟ କଲେ । ୩୩ ।

କ୍ଷମା ସାଗର | ନାଗରବର | ନନ୍ଦନନ୍ଦନ ଲୀଳା
କ୍ଷଣିକ ମନେ | ହେ ସାଧୁ ଜନେ | କଣ୍ଠରେ କର ମାଳା
କ୍ଷଣେ ଅନ୍ତର | ନ କର କର | ଧର କହୁଛି ଏତେ
କ୍ଷୀର ସାମର | ଦୀନକୃଷ୍ଣର | ଭାବନା ଅବରତେ । ୩୪ ।

# ଦୃଷ୍ଟାନ୍ତ ଚଉତିଶା

---

ନାନା ଦୃଷ୍ଟାନ୍ତ ଦ୍ୱାରା ପ୍ରୀତିଲକ୍ଷଣ ବର୍ଣ୍ଣିତ ହୋଇଥିବାରୁ ଚଉତିଶାର ନାମ ଦୃଷ୍ଟାନ୍ତ ଚଉତିଶା ହୋଇଅଛି । ପରବର୍ତ୍ତୀ କାଳରେ ପ୍ରକୃତ ରୂପେ ପଣ୍ଡିତ ମଧ୍ୟ ଦୀନକୃଷ୍ଣଙ୍କ ଅନୁକରଣରେ ଏହି ନାମର ଗୋଟିଏ ଚଉତିଶା ଲେଖିଥିଲେ ଏବଂ ଦୃଷ୍ଟାନ୍ତ ଚଉତିଶା କହିଲେ ତାଙ୍କର ଚଉତିଶାକୁ ବୁଝାଉଥିଲା । ଦୀନକୃଷ୍ଣଙ୍କର ଏ ଚଉତିଶା ନବାବିଷ୍କୃତ ।

କମଳନୟନ ଦୂତୀ କର ଧରି କହନ୍ତି ବିନୟ କରି
କଉଁ ଦୋଷକୁ ରୋଷ ମୋ ବିଷୟରେ କରିଅଛନ୍ତି ଜୀବେଶ୍ୱରୀ
କାରଣ ନ ଥାଇ ପ୍ରଭୁ କୋପ କଲେ ତହିଁକି ନାହିଁ ଉପାୟେ
କେବଳ ଜାଣିଲି କୁମତି ଗୁଆଁର କଥାହିଁ ବୁଝିଲି ପ୍ରାୟେ । ୧ ।

ଖୀନଉଦରୀ ଖଞ୍ଜରୀଟନୟନୀ ସେନେହ ବଜ୍ର ସମାନ
ଖଳ ପୀରତି ମେଘ ଛାଇ ପରାୟେ କ୍ଷଣେକ କରୁଛି ଆନ
କ୍ଷଣେ କ୍ଷଣକେ ତା ସୁଖ ସୁମରି ତ ଲାଗୁଅଛି ମହାଭୟେ
ଖୋଜିଲେ ତ ମୋତେ ବୃଦ୍ଧି ଦିଶୁନାହିଁ ପଢ଼ିପ ପାଠ ପରାୟେ । ୨ ।

ଗଜଗମନୀ ମୋହୋଠାରେ ଏ ମାନ ହେନେହେଁ କରି ନ ଥିଲା
ଶୁଣୁଛି ମୋ ମନେ କେ ଅବା ତାହାକୁ କଉଁ ଉପଦେଶ ଦେଲା
ଗୁପତ କଥା ପ୍ରିୟସଖି ! ଏତେହେଁ କହିବୁ ପିକଭାଷୀଙ୍କି
ଗୁଣ-ଗରୁଈ ହୋଇ ତାର ସେନେହ ଗିରି ନଦୀ ପରି ସଖି ! । ୩ ।

ଘନଜଘନୀ ଯେ ଯେନ କହୁଥାଇ ତୁମ୍ଭେ ମୋ ନୟନତାରା
ଘନସ୍ତନୀର ଘନସାର ଚନ୍ଦନ କଣ୍ଠ-ଗଜମୋତିହାର
ଘୂଣାକ୍ଷରେ ଅବା ଘଣ୍ଟଣଲୟନୀ ଏମନ୍ତ ମନେ ଭାବିଲା
ଙନ ବଳ୍ଲୀ ସ୍ନେହ ଛଇ ପର୍ଯ୍ୟେ ଏହିଠାରେ ସେ ଦଶିଲା । ୪ ।

ନବ ରସରେ ଯେ ରସିକ ନୁହଇ ସେହି ନାଶ ଯାଉ ବେଳେ
ନବ ସୁଧାକର ଆଦର ଯେମନ୍ତ ନ ଥାଇ ସର୍ବଦା କାଳେ ।
ନାହିଁ ଇକ୍ଷୁ ରସୁଁ ସସାରେ ମଧୁର ପାକେ ସେ ହୁଅଇ ପିଠା
ନାଗରୀରଞ୍ଜନ ନୟନ ପ୍ରଭମା ପ୍ରତକ୍ଷେ ଏବେ କଲା ତା । ୫ ।

ଚାରୁ ଚାମୀକର ଚମ୍ପକବରନା କାଲି ଏହି ବାଟେ ଗଲା
ଚନ୍ଦ୍ରଅବତଂସ ନନ୍ଦନ ଜନମ ତଥି ଚନ୍ଦ୍ର ମୋତେ କଲା
ଚତ୍ତେ ଚତୋଇ ଯେ ଚରିତ ମୋହୋର ଅଙ୍ଗ ହୋଉଛୁ ଅବଶ
ଚକ୍ଷୁ ପଲକ ଯେ ସହି ନ ପାରଇ ସେ କଲା ଏତେ ନିରାଶ । ୬ ।

ଛାଡ଼ି ନ ଯାଇ ରହୁଛି ଛାର ଜୀବ କହିବାକୁ ପୁଣି ଏହା
କ୍ଷଣେ ଦେଖି ଯାହା ଶୁଣିହିଁ ନ ଥିଲା ଭୂଷଣ କଲାଣି ତାହା
ଛଇ ଅନୁରୂପେ ଉଜଳେ ତାହାର ହୃଦୟ ନୋହିଲା ଜାଣି
ଛାଡ଼ିଲା ବକା କୁସୁମ ପୁଷ୍ପ ପ୍ରାୟେ ହେଲା ସେ ରମଣୀମଣି । ୭ ।

ଯେତେ ଭରସା ଥିଲା ତାର ତହିଁକ ଦୟା-ଜଳନିଧି ବୋଲି
ଜାଣି ତ ହୋଇଲା ଏହିଠାରେ ସବୁ ଯାହାର ଯେମନ୍ତ ଗୁଲ
ଜଳରେ କୁମୁଦ ଗଗନେ ଚନ୍ଦ୍ରମା ଦୂରୁ ଦେଖି ହୋଏ ସୁଖୀ
ଜୀବ ପରମ ପ୍ରାୟେ ପ୍ରାଣବନ୍ଧୁକୁ ନିକଟେ ଥିଲେ ନ ଦେଖି । ୮ ।

ଝଲଗଉକ୍ଷୀ ଶ୍ରୀମୁଖଚନ୍ଦ୍ରଠାରୁ ହସି ଅନାଇବା ଯାଏ
ଝିମିଟେ ମନ ନୟନ ଛଡ଼ି ନାହିଁ ଉତନଝଟକ ପ୍ରାୟେ

ଝଷକେତନ-କେଳି-ଚିନ୍ତାମଣି କି ଲଭି ହେଲି ଚିନ୍ତାମଣି
ଝଡ଼ଇ ନାହିଁ ଦରିଦ୍ରତା ଭଣ୍ଡାର ନିକଟେ ଥିଲେ ସେ ପୁଣି । ୯ ।

ଞୀରଜନୟନୀ ଅନେକ ଯତନେ ଯେନ୍ନ ହେଲେ କଲି ଦୂର
ଞଷ୍ଟେ ଜାଣି ହେଲା ଭାବବତୀ ଭାବ କୁସୁମ ଗର୍ଭ ପ୍ରକାର
ନ ଯିବ ମୋହୋର ମନରୁ ସେ କଥା ଯେତେ ସୁଦୟା ସେ କଲେ
ନାଶଇ କି ପୂର୍ବ ସନ୍ତାପ ବହୁତ ଦିନ ଚିରକାଳ କଲେ । ୧୦ ।

ଟେକି ଯେ ଟେକସ୍ତନୀ କି ମୁ ଭଜିଲି ଟାଣ ମନସିଜ ଭୟେ
ଟିକାଏ ସେ ମନୁ ନ ଟଳିଲା ମୋର ହରିମାଳିକା ପରାୟେ
ଟଙ୍କଧର-ରିପୁ ଟୋପେ ପଡ଼ି ଏବେ ହେଲେ ହୋଉଅଛି ହତ
ଟାଣ ମୃଗାରି ମୃଗ ମୁଖେ ପଡିଲେ ଯେମନ୍ତ ମହାଗର୍ବିତ । ୧୧ ।

ଠାକୁରାଣୀ ପଣ ଏହୁଠାରୁ ତାର ଜାଣିମାକୁ ହେଲା ସଖି !
ଠାଠିକ କରି ଯାହା ଦୋଷ ନ କହ ଶ୍ଳେଷକଳା ଚନ୍ଦ୍ରମୁଖୀ
ଠାକୁର ହୋଇ ଠାବ କଲା କହିଲେ ସବୁରି ସେ ହୀନମତି
ଠିକ ଲୋକଙ୍କର କରେ ରଙ୍ଗ ଥିଲେ ଭ୍ରମେ ବୋଲାଏ ରଜତ ॥

ଡ଼ରୁଥାଇ ତାର ମୁଖ ମଳନକୁ ତାମ୍ବୂଲୀ ତାମ୍ବୂଲ ପ୍ରାୟେ
ଢରୁ ଡରୁ ଦେଖ ଦଇବ କଷଣ କଲା କାମଡକା ଯାଏ
ଡୋଲା ଡ଼ାଳମ୍ବବୀଜଦନ୍ତୀ ପରାୟେ ଡ଼ମ୍ବରୁ-ମଝାକୁ କହ
ଡ଼ୋଲେ ଦେଖୁଁ ଦେଖୁଁ ଉକାଇତ ପ୍ରାୟେ ଅତହିଁ ଦାରୁଣ ନୃତ୍ୟ ।୧୩

ଢ଼ଗ ମେଳିବେ ଅଙ୍ଗ ଏହା ଶୁଣିଲେ ଏହି ଗୋପବଧୂମାନେ
ଢ଼ାଙ୍କୁଣି ଫିଟିଲେ ଫେର ଧରି କରି ଉଭାରଇ ଫଣୀ ଯେସନେ ।
ଢାଳ ନୟନେ ଯେ କହୁଥାଇ ବନ୍ଧୁ ଏକ ଜୀବ ବେନି କାୟେ
ଢାଳେ ତା ଜାଣିଲି କୃପଣ ଲୋଭୀଙ୍କ ଆଶା ଦେଖାଇଲା ପ୍ରାୟେ ॥

ଆଉ ଅଧିକ କି କହିବି ସଜନି ! ଦିନେ ଚନ୍ଦ୍ର ରଜନୀରେ
ଅଙ୍କେ ମୋର ଶୋଇ ଅନ୍ତର ମଣିଲୁ ପୁଲକ ଯେନାଯେନରେ
ଏବେ ଦଇବ ବଳରେ ସେ ସ୍ନେହ ନଉନ ଦିଶିଲା ଏତେ
ଅବନୀବତୀର ମହା ସ୍ନେହ ଯେସନେ ପ୍ରକାଶିଲା କାଚବାଡ଼େ । ୧୫ ।

ତ୍ରିପୁରସୁନ୍ଦରୀ ତପନୀୟଗୋରୀ ହୃଦର ପଦକ ମୋର-
ତାହାବିନୁ ତପସ୍ୱୀ ଯୋଗୀ ପ୍ରାୟେ ବିଷୟ କଲି ଅନ୍ତର
ତୁଙ୍ଗସ୍ତନୀ ଯେ ଅଙ୍ଗହାର ପରାୟେ କରିଛି ମୋତେ ସଙ୍ଗରୁ
ତୁ ତାହାର ମନ ଯେନାଇ କହ ଯେ ହାର ପ୍ରାୟେ ମୋତେ କରୁ ॥

ଥିରଗମନୀ ବିମନ ହୋଇବାରୁ ଥୟେ ନୋହେ ମୋର ମନ
ଥିର ନୋହେ ଯେସନେ ଘନେ ଘନଲତା ବନଜ ପଲ୍ଲବେ ବନ
ଥିରମଣ୍ଡନୀ ମଣ୍ଡନ ଥାଉଁ ଯେବେ ମୋହୋର ହେଲା ଏ ଦଶା
ଥୂଳ-ନିତମ୍ବାକୁ କହିବ ଏବେହେଁ ହେଲାଣି ନିଧନ ଦଶା । ୧୭ ।

ଦ୍ୱିରଦଗମନୀ ଦ୍ୱିଜରାଜମୁଖୀ ଦୟା ଅଦୟା ଅଦୃଶେ
ଦହି ହୋଉଛି ଦାରୁଣ ଅବିବେକ, ଦୁଆର ଉଘୁକ ଆସେ
ଦୂରୁ ଦେଖିଲେ ଦେବତାଙ୍କୁ ଗୃହିଁବା ଦିଅଇ ନରମାନଙ୍କୁ
ଦେବତାଙ୍କୁ ଚିହ୍ନ ପ୍ରତିମା କରଇ ଏ ନିକ ବିଚିତ୍ର ତାଙ୍କୁ । ୧୮ ।

ଧରଣୀରେ ମୀନ ଜୀବନ ପରାୟେ ଯାହା ତାକୁ ମୋତେ କଲା
ଧରିଛି କେବଳ ତା ବିନୁ ଶରୀର ନୁହଇ ଏ ଚିତ୍ତ ଭଲା
ଧ୍ୱଂସିଦେଲେ କାମ ଅନଳେ ମୋ ଦୁଃଖ ନ ଯେନାଲା ପ୍ରାଣମଣି
ଧ୍ରୁବ ଏ କଥା ବ୍ୟାଧିବନ୍ତ ଆରତ ବୈଦ୍ୟଠାରୁ ନାହିଁ ଶୁଣି । ୧୯ ।

ନାଗଶ୍ୱରତନ ଅନୁପଠେ ଅନ୍ତ ନୃତ୍ୟକାରୀ ପ୍ରାୟେ ହୋଇ
ନୟନ ମନକୁ ଉଛାହା କରିଛି ଦର୍ଶନ ସୁଖ ନ ଦେଇ

ନବଘନକୁ ଚାତକ ପକ୍ଷୀ ପ୍ରାୟେ ତାହାକୁ ମୋହୋର ଆଶା
ନଷ୍ଟପ୍ରାୟେ ଯେବେ ସେ ନିରାଶ କରିବ ତେବେ ମୋ ନିଧନ ଦଶା ॥

ପ୍ରାଣପ୍ରିୟା ଦୟା-ଜଳନିଧି ହୋଇ ପ୍ରମାଦ ମୋଠାରେ କଲା
ପଶୁପତି-ରିପୁସନ୍ତାପ ଅନଳେ ପକାଇ ଅଲଗା ହେଲା
ପ୍ରାଣବାନ୍ଧବୀ ପରିତ୍ରାଣ ନ କଲେ ନିଶ୍ଚେ ଜୀବ ଯିବ ଜଳି
ପଙ୍କଜକର ଦରଶନେ ଯେମନ୍ତେ ଫୁଟିଲା ଗଙ୍ଗଶିଉଳି । ୨୧ ।

ଫାଇ କାଲକୁ ମୁଁ ଫନ୍ଦା କରିଥିଲି ଫୁଲ୍ଲ-କମଳନେତ୍ରୀଙ୍କ
ଫଳ ଥାଉଁ ମୂଳ ଭୋଗ ତ ହୋଉଛି ଫୁଲ ବିଶିଖ-ପତିଙ୍କ
ଫେରି କହିବ କାହାକୁ ଏ ବେଦନା ଫେଡ଼ିବ କେ ମୋର ଦୁଃଖ
ଫୁଲ ବାହାରେ ଆନ ନିକ ଫୁରୁଣା କରି ପାରେ ଶିଳୀମୁଖ । ୨୨ ।

ବିଧୁବଦନୀ ବିନୁ ବୁଦ୍ଧି ଚନ୍ଦ୍ରମା ଚନ୍ଦନ ବଧୂର କରେ
ବାଳିଶ ନଗର ପଣ୍ଡିତ ପରାୟେ ବୁଲିଲେ ହେନ ନ ସରେ
ବିକିଦେଲା ଦାସ ଜନଠାରେ ରୋଷ ଯେବେ କଲା ରସବତୀ
ବାଟ ରହିତ ବୋହିତ ପ୍ରାୟେ ତେବେ ମୋହୋର ଆଉ କି ଗତି ?॥

ଭରସା କେବଳ ତୋହାଠାରେ ତାଙ୍କୁ କହିବୁ ମୋ ଦୁଃଖ ଘେନି
ଭାଗ୍ୟଥିଲେ ସେ ଭବରିପୁ ତାପରୁ ତାରିବ ମନମୋହିନୀ
ଭାବିନୀ ମୋତେ ସତେ ଭିନ୍ନ କରିବ ଭରାନ୍ତ ନ କରି କିଛି
ଭାବନିଧି ଠାରେ କରି ପ୍ରାପ୍ତେ ହୋଇ ଦ୍ରବ୍ୟ କଠିନତା ଅଛି ।୨୪।

ମନ୍ଦରନୟନୀ ଘେନାଘେନି ଭାବ ଅମୃତ କ୍ଷୀର ସମାନ
ମରାଳ କେତନ ମାନସ ମଦନ ପ୍ରାୟେ କଲା ଉନ୍ମାଦନ
ମେଘଚନ୍ଦ୍ର ବିନୁ ଚାତକ ଚକୋର ଜୀଅନ୍ତି ଆନ ଉପାୟେ
ମହାମଣ୍ଡନୀ ମୋର ପୁଣି ଏମନ୍ତ ମଧୁକର ମଧୁ ପ୍ରାୟେ । ୨୫ ।

ଜାଣୁମଣି ମୋତେ ଗୁରୁ ବାମ ହେଲା ବାମଦେବ ବାମ କରେ
ଯାହା ସେ ଲଘୁତ୍ୱରେ ଲଘୁ କରାଇଲା ଅଲୋକତ ସେ ଲୋକରେ
ଜାଣିଥିଲି ତାର ହୃଦ ଅନୁରାଗ ଶାଳକା ଫୁଲ ପରାୟେ
ଜାଣୁ ଜାଣୁ ଏବେ ଗଲା ସେ ସ୍ଫଟିକ ପଙ୍ଗତେ ଭୁଲିବା ଯାଏ । ୨୬

ରଙ୍ଗେ ତା ଯେନକେ ସେବନ୍ତି ଦୁର୍ଲ୍ଲଭ ସୁଲଭ ନୋହେ ବିଷାଦେ
ରମଣୀମଣି ସେହିମତ ସହାଗ ରଖି ରାଗ କରେ ଖେଦେ
ରଙ୍କରତନ ପାଇଲା ପ୍ରାୟେ ହୋଇ ମୁଖୁଁ ନ ଆସଇ ଭାଷା
ରଖିଥିଲା ନିଜ ମୋହପାଇଁ ବହି ରଥାଙ୍ଗ ରଜନୀ ଦଶା । ୨୭ ।

ଲେଶେ ତାର ମୋର ଅନ୍ତର ନ ଥିଲା ନେତ୍ର ପଲକ ଯେମନ୍ତ
ଲୋକନାଥ ବଶେ ଏ ଶେଷ ହୋଇଲା ଆକାଶ କୁସୁମବନ୍ତ
ଲୋଚନ-ଶ୍ରବଣ-ମଣ୍ଡନ ଖଣ୍ଡନ କରିବେ ଘଟେ ବିଷାଦ
ଲମ୍ବଉଦରଙ୍କୁ ଲକ୍ଷେ ଲଡୁ ଦେବି ସେ ଯେବେ ହେବ ପ୍ରସାଦ । ୨୮ ।

ବାଇ ପ୍ରାୟେ ହୋଇଥିଲେ ପ୍ରତି ଚକ୍ଷୁ ଯେମନ୍ତ ବର୍ତ୍ତି ଦଶଇ
ବିଧୁବଦନୀ ସେହିମତ ଅନ୍ତରେ ଥିଲେ ନେତ୍ର ବିକାଶଇ
ବହୁତ ସୁଖ ହୋଇ ଇନ୍ଦ୍ରପଦବୀ ସ୍ୱପନେ ପାଇଲା ପ୍ରାୟେ
ବାଞ୍ଛା ଧନ ପ୍ରାୟେ ଭୋଗକୁ ନ ଆସେ ହୃଦକୁ କରଇ ଘାୟେ । ୨୯ ।

ସବୁ ଅନୁଭବ ଏହିଠାରୁ ହେଲା ଶଶୀମୁଖି-ମହିମାରୁଁ
ଶୁଭଦାୟିନୀ ସନ୍ତୋଷ ହୋଇ ଏବେ ପାଶେ ନେଇ ଦାସ କରୁ
ସରୂପ ସର୍ପଙ୍କୁ ପୟ ଦେଲା ପ୍ରାୟେ କନ୍ଦର୍ପଙ୍କୁ ଦେଲା ଜୟେ
ସରି ହୋଇ ଦୁଇ ଆଡ଼କୁ କାଟଇ ଶଙ୍ଖାର କରତ ପ୍ରାୟେ । ୩୦ ।

ଶମନ ଶମନ ସମ ଅଦାଳତା ତାହାଠାରେ କି ବିନୟେ
ଶମ୍ଭୁ ଜଳରେ ତାହାକୁ ନାଶଇଛି ଲୋହ ପାଷାଣ ପରାୟେ ।

ସମଗ୍ର ତୋତେ କେତେ ପୁଣି କହିବ ଭୁ ତ ସବୁ ଗୁଣ-ସୀମା
ସଭାସଦ ପ୍ରାୟେ ଉଚିତ କହି ଭୁ ମୋ ଦୋଷ କରିଥ କ୍ଷମା । ୩୧ ।

ସଜନ ! ତୋତେ ଯେ ଦେଖିଲେ ପଥେ ଯେ ହୋଇବ ପୁଷ୍ପ ସମାନ
ସବୁ ଅର୍ଥେ ଅନୁରାଗ ପୂର୍ଣ୍ଣ କର ମୁଖେ ପ୍ରକାଶିବ ଆନ ।
ସେହି ସମ୍ପୃକ୍ତ ପଛ କରଣ ଭୁ କହିବୁ ମୋର ସନ୍ଦେଶ
ସ୍ୱଜନ ସାଧୁ ଉପଦେଶ ପାଇଲା ପରାୟେ ହେବ ସନ୍ତୋଷ ।୩୨ ।

ହରଣନୟନା ପଯୃପେଷ୍ଠୀ ପ୍ରାୟେ ବାହାରକୁ ଯେ କର୍କଶ
ହୃଦୟ ଯାର ପରିପୂର୍ଣ୍ଣ ହୋଇଛି ସୁମଧୁର ଘନରସ ।
ହଂସଗମନା ପାଶକୁ ତୋ ସଙ୍ଗତେ ମନକୁ ସମର୍ପି ଦେଇ
ହୃଦୟ ଶୂନ୍ୟ ହୋଇ ରହି ଅଛୁଟ ସଙ୍ଗ ସନ୍ଦର୍ଶକୁ ବହି । ୩୩ ।

କ୍ଷମେ ଚଲ ମୁଁ ଏହି କୁଞ୍ଜେ ରହିଲି ତୋହୋ ଆସିବାକୁ ଗୃହିଁ
କ୍ଷୋଭ ରହିତ ପକ୍ଷୀ ପରାୟେ ଗୋତ୍ର ଆକୃତ ଦଶାକୁ ବହି ।
କ୍ଷଛନ ହୋଇ ଦୂତୀ ବେଗେ ଚଳିଲା ଖିଡମଣ୍ଡନକୁ ଲକ୍ଷି
କ୍ଷୀଣମତି ଦୀନକୃଷ୍ଣ କହେ ଯେହେ ଆନନ୍ଦ ବଶରେ ହୋଇ ।୩୪।



# ଶ୍ରୀ ରାଧିକାସ୍ମରଣ ଚଉତିଶା

କବିବର୍ଯ୍ୟ ଏହି ଚଉତିଶାରେ ଦୀନକୃଷ୍ଣ ମଥୁରାପ୍ରବାସୀ ଶ୍ରୀକୃଷ୍ଣଙ୍କର ରାଧାବିରହ-ଜନିତ ଅକୁଳତା ଯେଉଁ ଦକ୍ଷତା ସହ ବର୍ଣ୍ଣନ କରିଅଛନ୍ତି ତାହା ତାଙ୍କରି ପକ୍ଷରେ କେବଳ ସମ୍ଭବ । ପ୍ରତି ପଙ୍‌କ୍ତିରେ ବିରହ-ଅଗ୍ନିର ଦୀପ୍ତ ଶିଖା ଯେପରି ଜୀବନ୍ତ ହୋଇ ଫୁଟି ଉଠିଅଛି । ଯେଉଁ ବ୍ରଜଭାବରସିକ ଭକ୍ତଗଣଙ୍କର ବିରହରେ ବିଳାସ, କହିବା ବାହୁଲ୍ୟ, ଶ୍ରୀ ରାଧିକାସ୍ମରଣ ଚଉତିଶା ସେମାନଙ୍କର ନିତ୍ୟ କଣ୍ଠହାର ହେବ ।

କମଳନୟନ କଂସ କଟକରେ କରନ୍ତେ ବିହାର ।
କି କରୁଥିବ ସେ କଳକଣ୍ଠକଣ୍ଠୀ ରାଧିକା ମୋହୋର ।
କଣ୍ଠର ଅମୂଲ୍ୟ ନକ୍ଷତ୍ରକଣ୍ଠୀ ମୋ ନୟନପ୍ରତିମା ।
କି ବିହରୁଥିବ କେହି ବାନ୍ଧିଥିବ ଅନ୍ଧାରେ ମୋ ରାମା ।

ଖୋଜିଲେ ସକଳ ବ୍ରହ୍ମାଣ୍ଡେ ଯାହାକୁ ନ ପାଇ ସମାନ
ଖଳ ଦଇବ ବଶରୁ ଛାଡ଼ି ତାକୁ କଲି ମୁଁ ଗମନ ।
ଖଣ୍ଡ ଖଣ୍ଡ ହୋଇ ଫାଟି ତ ନ ଯାଇ ହୃଦୟ ମୋହୋର
ଖଞ୍ଜନନେତ୍ରୀ ବିନୁ ଯାହା ରହିଛି ଧିକ ଏ ଶରୀର । ୨ ।

ଗଜେନ୍ଦ୍ରଗମନୀ ଗୋରୀ ସୁକୁମାରୀ ମୋ ପ୍ରାଣେଶ୍ୱରୀ
ଗାଉଥିବ ମୋର ଗୁଣ ନିରନ୍ତରେ ସୁମରି ସୁମରି ।
ଗୁଣି କେତେବେଳେ ଅବଧିବଚନ ଛାଡ଼ିବ ନିଶ୍ୱାସ
ଗୁଆଁରଠାରୁ ଗୁଣବନ୍ତ ପରାୟେ ହେବନି ନିରାଶ ୩ ।

୩-୨--ମୋର ଗୁଣ କେତେବେଳେ (ପା)

ଘନ ଘନ ହୋଇ ଯେନ ଉଠୁଥିବ ବିରହ ଅନଳ
ଘେନିବାରୁ ମୋର ଅଛଣଯ୍ୟ ଘନ ସେନେହ ପ୍ରବଳ ।
ଘର ବାହାର ସମାନ ମଣୁଥିବ ରମଣୀରତନ
ଘେନୁଥିବ ନାହିଁ ସଜନୀମାନଙ୍କ ଶୀତଳ ବଚନ । ୪ ।

ନବୀନବୟସୀ ପ୍ରାଣବାନ୍ଧବୀ ମୋ ପାଇଲା ବେଦନା
ନିର୍ଲଜ୍ଜ ଜୀବନ ନ ଯାଇ ଜନା ତା କରୁଛୁ ଭାବନା ।
ନାହିଁ ଯାହାକୁ ସପନେ ଦୁଃଖ ଭେଟ ତାହାକୁ ଏ ଦଶା
ନିଷ୍ଟେ ନାଶ ଯାଇ ନିଷ୍ଠୁର ନାହାକୁ କଲେହେଁ ଭରସା ।୫।

ଚନ୍ଦ୍ରକର ଚନ୍ଦ୍ରମଣିଙ୍କ ଆର୍ଦ୍ର କରଇ ଯେମନ୍ତ
ଚଣ୍ଡକର ଚଣ୍ଡମଣିଙ୍କ ଆର୍ଦ୍ର ଯେ ନ କରେ ତେମନ୍ତ ।
ଚନ୍ଦନ ଶୀତଳ ଦ୍ରବ ଯେନ ଦ୍ରବ୍ୟ ତାପକୁ ହରଇ
ଚୂର କର୍ପୂର ଅନଳେ ଦେଲେ ସବୁ ପ୍ରକାରେ ସରଇ । ୬ ।

ଛାର କଂସନୃପ ବୋଲେଣି ଛାଡ଼ ମୁଁ ଅଇଲି ତାହାକୁ
ଛୁର ମାର ହେଲି ଆପଣା ଇଚ୍ଛାୟେ କହିବ କାହାକୁ ।
ଛଇ ପ୍ରାୟେ ହୋଇ ନିରନ୍ତରେ ଲଟିଥାଇ ମୋ ସଙ୍ଗରେ
ଛାଡ଼ି ତାଙ୍କୁ ଛାର ଜୀବନ ରହିଣ ଅଛି ମୋ ଅଙ୍ଗରେ । ୭ ।

୪-୪—ହେନୁ ନ ଥିବ ସେ (ଗ)
୫-୧—ନବୀନ ବୟସେ (ଙ)
୫-୨—ନ ଯାଇ ଜୀବନ ଜଣା ବୁଝି ତାହା କରୁଛି ଚେତନା ( ଖ )
୬-୨—ଚଣ୍ଡକର ଚନ୍ଦ୍ରମଣିଙ୍କ (ଘ)

ଯେତେ ପ୍ରକାରେ ସୁଖ ମୋତେ ଦେଇଛୁ ମୋ ପ୍ରାଣବନିତା
ଜପାମାଳୀ କରି ଜପିଲେ କେ ତାହା କରିବ ଗଣିତା ।
ଜୀଇ ଥିବା ଯାଏଁ ଯିବ କି ମନରୁ ତାହାର ସେନେହ
ଯାବତ ପ୍ରକାରେ ଜମ୍ବୁନଦଗୋରୀ କଣିଛୁ ଏ ଦେହ । ୮ ।

ଝୁରୁ ଯେ ଥିବ କୁରଙ୍ଗୀ ପକ୍ଷୀ ପ୍ରାୟେ ହରାଇ ବବେକ
ଝର ପ୍ରାୟେ ଝର ଝର ବହୁଥିବ ନୟନୁ ଲୋତକ ।
ଝାମ ଯାଉଥିବ ଝସକେତୁ-ଶରେ ଝଲକବଦନୀ
ଝାଳ ଅଙ୍ଗେ ଝଳ ଯାଉଥିବ ଝୀନ ସୁରଙ୍ଗ ପଟନୀ । ୯ ।

ନ ରୁଚୁଥିବ କର୍ପୂର ଚନ୍ଦନାଦି ଲେପନ ବିଧାନ
ନାନାରତ୍ନ ଆଭରଣ ହୋଉଥିବ ଦୂଷଣ ସମାନ ।
ନେତ୍ରମାନେ ଭାସିଯିବା ଡରେ ନିଦ୍ରା ଆସିବ କାହିଁକି
ନ କଲା ବିଧାତା ଆଉ କେତେ ଗତି ବିରହୀ ଦେହୀଙ୍କି । ୧୦ ।

ଟଳ ଟଳ ହୋଇ ଟଳ ପଡୁଥିବ ଅନଙ୍ଗ ଅବଶେ
ଟେକ ଲାବଣ୍ୟ ଟାଣ ମାତ୍ର ଥିବ ତା ସେ କୁଚ-କଳସେ ।
ଟେକି କେତେବେଳେ ସଖୀମାନେ ସ୍ନେହେ ପକାଇ ଅଙ୍କରେ
ଟେକସ୍ୱର ହୋଇ ଡାକୁଥିବେ ଟଙ୍କାଧରଙ୍କୁ ଉଚ୍ଚରେ । ୧୧ ।

୯-୩—ଝଲକ ବରଣୀ । ଗ ।
୯-୪—ଝାଳେ-ଝଳ ଯାଉଥିବ ଝୀନ ନାଲ ବସନ୍ତ ପଟନୀ । ଗ ।
୧୦-୨—ମଣୁଥିବ ଦୂଷଣ ସମାନ (ଗ)
୧୧-୧—ଟଳ ପଡୁଥିବ ଅନଙ୍ଗ ଅନଳେ (ଖ)
୧୧-୨ — ଲାବଣ୍ୟଟାଣ ଥିବ କେବଳ ଉରଜ ଯୁଗଳେ (ଖ)
ଲାବଣ୍ୟ କେବଳ ଥିବ ତାର (ଗ)
୧୧-୪—ଡାକୁଥିବେ ଟଙ୍କଧରକୁ ଉଚ୍ଚରେ (ଖ) ଟେକସ୍ୱରେ ଡାକ ଦେଉଥିବ (ଗ)

ଠାକୁରାଣୀ ପଣି ଲକ୍ଷଣ ତାହାର ଅପାରୁ ଅପାର
ଠାଠିକ କର ତାହାଠାରେ କାଲି ମୁଁ ଠକଙ୍କ ବେଭାର ।
ଠିଆ ହୋଇ ଯେ ଚାହିଁଥାଇ ଗୋଧନ ବାହୁଡ଼ା ସମୟେ
ଠାଠିକ ଆଷାଢ଼ ମେଘକୁ ତୃଷିତ ଚାତକ ପରାଏ । ୧୨ ।

ଡେଉଥାଇ ନେତ୍ର ଶ୍ରବଣ ମୋହୋର ମୁରଲୀ ଧ୍ୱନିକି
ଡୋଲେ ଦେଖି ଦେଖି ଛାଡ଼ି ମୁଁ ଅଇଲି ଜୀବନ-ଧନୀକି
ଡେଉ ଶ୍ରବଣ ନେତ୍ର ଏବେ କାହାକୁ କହିବ ଭରସା
ଡକା ତ ହେଲା ମୋ ଡାଳମ୍ବଦନ୍ତୀକି ଥିଲା ସେ ଯେ ଦଶା ।୧୩।

ଢାଳ କରେ ଗଣ୍ଡପାଲୀ ଭାଳୁଥିବ ମୋହୋର ପ୍ରସଙ୍ଗ
ଢଳୁଥିବ ତାର ସୁରଙ୍ଗ-କୁରଙ୍ଗ-ନୟନ-ତରଙ୍ଗ ।
ଢାଳେ ମୋର ଦୟା ଉଦ୍ରେକ ନାହିଁ, ମୁଁ ଅଟଇ ଦାରୁଣ ।
ଢୋକିଲା ଅମୃତ ଢାଳିଦେଇ ଏବେ କରୁଛି କାରୁଣ । ୧୪ ।

ଆହା ରେ ଅଜନ୍ମସୁଖି ! ଶଶୀମୁଖି ! ଆହା ରେ ସଜନି !
ଏହା ଅରଜିଲି ତୋ ବିନୁ ବଞ୍ଚିଲି ଏ ମଧୁ ରଜନୀ ।
ଏମନ୍ତେ କଲ ମୋ କର୍ମରେହେଁ ଲେଖିଥିଲା ସେ ଦଇବ
ଅଧପ୍ରାଣ ଯାଇ ଅଧପ୍ରାଣ ଥାଇ ଏ ଦେହ ସହିବ । ୧୫ ।

ତାପ-ତଟିନୀ ତଟ ତରୁ ହୋଇଛି ହୃଦୟ ମୋହୋର
ତହିଁ ପୁଣି କାମ କରୁଅଛି ଶର ବରଷା ପ୍ରଖର ।

୧୩-୩—ଡେଉଣ ଶ୍ରବଣ ନୟନ କାହାକୁ (ଗ)  ୧୩-୪—ଥିଲା ସେହି ଦଶା (ଗ)
୧୫-୨—ଏହା ଅର୍ଜିଥିଲି ତୋ ବିନା ବଞ୍ଚିଲି ଏ ଚନ୍ଦ୍ରରଜନୀ (ଗ)
୧୬-୧—ତାପ ତଟିନୀ ତଟତରୁ ପରାଏ ଜୀବନ (ଖ)

ତାହା ଦୁଃଖେ ଦୁଃଖୀ ଯାହା ସୁଖେ ସୁଖୀ ଥିଲା ଏ ଶରୀର ।
ତଥାପି ତରୁଣୀମଣି କଥାକୁ ମୋ ହୋଉଛୁ ବଧିର । ୧୬ ।

ଥରୁ ଯେ ଥିବ ମଦନ ପରଶରେ ଥରହରହୃଦୟା
ଥରେ ଥରେ ବୋଲୁଥିବ ପ୍ରାଣବନ୍ଧୁ ଅଟହଁ ନିର୍ଦ୍ଦୟା
ଥିବ ନା କି ତାର ସେ ଚନ୍ଦ୍ରବଦନେ ସେ କାଳ ପ୍ରସନ୍ନ
ଥିବାକାଳେ ତାହା ପାଶେ ଯାହା ଦେଖିଥିଲା ଏ ନୟନ । ୧୭ ।

ଦୂର କରିଥିବ ଦରହାସକୁ ସେ ବନ୍ଧୂକ-ଅଧର
ଦଇବେ ନିଶ୍ୱାସ ରକ୍ଷି ନ ଥିବ ତା ସୁରଙ୍ଗ ବେଭାର ।
ଦବ୍ୟ କନକ କେତକୀ ଦେହ ଛାଡ଼ିଥିବ ତା ଝଲକ
ଦୁର୍ବଳ ଭାବରୁ ବନ୍ଧୁ ନ ଥିବ ସେ ମୁକୁତା ମାଳକ । ୧୮ ।

ଧୀରେ ସଖୀମାନେ ଅନାଇଁ ଧରଣୀମଣ୍ଡଳୀ ମୂର୍ତ୍ତିକ
ଧୈର୍ଯ୍ୟ ହରାଇ ଧିକ୍କାରୁଥିବେ ମୋ ପ୍ରମାଦ ପ୍ରୀତିକ ।
ଧ୍ରୁବ ହୋଇ ଥିବ ଲୋକେ ଯେଉଁ ପ୍ରୀତି କରନ୍ତି ପ୍ରକଟ
ଧାତା ହଟ ଦେଖ ତହିଁ ପୁଣି କଲା ଏମନ୍ତ କପଟ । ୧୯ ।

ନ କରନ୍ତି କାଳ କେତେବେଳେ କାହା କି ନୋହେ ଏ ଦେହ
ନେଇ ପଲ୍ଲକ ଯେ ନ ସହେ ସହୁଛି ସେ ଏତେ ବିରହ ।

୧୮ ପଦର ୧ମ ଓ ୨ୟ ପାଦ ସ ପୋଥିରେ ୩ୟ ଓ ୪ର୍ଥ ପାଦରୂପେ ପଠିତ—
୧୮-୩-୪—ଦୂରକର ଦେଇଥିବ ତୁ ହାସକୁ ବନ୍ଧୂକ ଅଧର । ଦଇବେ ନିଶ୍ୱାସ ରକ୍ଷୁ ନ ଥିବ ସେ କୃତ୍ରିମ ନାସାକୁ ।
୧୯-୩—ହୋଇଛି ପ୍ରକଟ (ଗ)

ନୃପତି ସମ୍ପତ୍ତି କେତେବେଳେ କେତେବେଳେହେଁ ଦୀନତା
ନ ଥିବା ଥିବା ଥିବା ନ ଥିବା କରେ ଦଇବ ବିଧାତା । ୧୦ ।

ପ୍ରାଣବାନ୍ଧବୀ ମୁଖ କାହିଁ ଚାହିଁବି, କାହିଁ ଏ ସନ୍ତାପ
ପଡ଼ିଲା ଅମୃତ ବୃଷ୍ଟିରେ ବରଷା ପାଷାଣ କଲାପ ।
ପୀତବସନୀ ମନ୍ତ୍ରପିକବଚନୀ ଚମ୍ପକବରନୀ
ପୁଷ୍ପକାଳପ୍ରାପ୍ୟେ ସୁଖଦ ପଲ୍ଲବ ଦଶନବସନୀ ।୧୧ ।

ଫୁରୁଣାରେ ଫୁଲ୍ଲ କୁସୁମ ଦେଖି ଯେ ହୁଅଇ ଅସ୍ଥିର
ଫୁଲୁଥାଇ ଫୁଲ୍ଲ କଦମ୍ବ ପରାଏ କେତକୀ ଶରୀର ।
ଫାଙ୍କି ଯାଉଥିବ ହୃଦସ୍ତୁ ଏବେ ଯେ ଅନାଇଁ ଏମାନ
ଫୁଲଶର ଶରେ ଫୁଟୁଥିବ ମୋର ଜୀବର ଜୀବନ । ୧୨ ।

ବଢ଼ାକର ଲୋକେ ଗ୍ରୀଷମେ ଘେନନ୍ତି କର୍ପୂର ଚନ୍ଦନ
ବଧୂବଦନୀ ଅଙ୍ଗସଙ୍ଗ ଲୋଡ଼ା ମୋ ନ ଥାଇ ସେମାନ ।
ବଞ୍ଚାଇବ କଉଁ ପ୍ରକାରେ ବରଷ୍ଟ ଅଇଲେ ସେ କାଳ
ବିରହ ଅଗ୍ନିରେ ଘୃତ ସମ ଦେଲେ ଜଳଇ ପ୍ରବଳ । ୧୩ ।

ଭାଗିଲା ସବୁ ଭରସା ଏକା ଭୁରୁଶୋଭନୀ ବନ୍ଧୁନେ
ଭୂପତି ନ ଥିଲେ ସମ୍ପତ୍ତି ଯେମନ୍ତ ସୁଖକୁ ନ ଘେନେ ।

୧୦-୪—ନଥିବା ଥିବା କରଇଥିବା ନକରେ ଦଇବ ଅହନ୍ତା (ଖ) ନ ଥିଲା ଥିଲା କରି ନ କରେ ଦଇବ ବଧାତା (ଗ)
୧୧-୧—ମୁଖ କାହିଁ ପାଇବା (କ)
୧୩-୨—ବଧୂ ବଦନୀ ଅଙ୍ଗ ସଙ୍ଗ ଲୋଡ଼ା ମୋ (ଖ)

ଭାବଗ୍ରାହୀ ଭରସାରେ ଭାବେ ମତେ ଭଜନ୍ତି କମଳା
ଭାସିଲି ଅଗାଧ ଜଳଧିରେ ଭେଳା ଲଗାଅ ଅବଳା । ୧୪ ।

ମୋତେ ମେଘ କର ବିଜୁଳୀ ହୋଇ ଯେ ଝଟକେ କୋଳରେ
ମରାଳଗମନୀ ବିରୂପେ ବଞ୍ଚିବ ଏ ଘନକାଳରେ ।
ମୟୂର ଡାକରେ ମେଘ ଦମକରେ ପଡ଼ିବ ଚମକ
ମଲି ତ ନାହିଁ ମୋ ପ୍ରାଣବନ୍ଧୁ କେତେ ସହିବ ଅଟକ । ୧୫ ।

ଜୀବ ଥିବ ନଙ୍କ ଶରଦଶଶୀର ହେମନ୍ତ ସଙ୍କ
ଯାବତ ପ୍ରକାରେ ଦୁଃଖ ଦେଲ ବିହି କନକଗୋରାଙ୍କ ।
ଜାଣିଲି ସସାରେ ନାହିଁ ନାହିଁ ଧାତା ସମାନେ ଦାରୁଣ
ଯାହାକୁ ଦେଖିଲେ ପଶୁ ବଶ ହୋଏ ତାକୁ ଏ କଷଣ । ୧୬ ।

ରତିପତିକ ଛ ବୋଲବା ଗତି ଯେ ନ କରେ ବିଚ୍ଛେଦେ
ରଖିଛି ସେ ଏବେ ଜୀବନେ ତାହାକୁ ଯେନେହ ପ୍ରମାଦେ
ରସବତୀ ରସେ ରସିକ ହୋଇ ମୁଁ ରହିଲି ଜଣ୍ଟିନ୍ତେ
ରହିଲେ ଯେମନ୍ତେ ଜଳରେ ଉତ୍ପଳ ହୃଦୟ ନ ଭେନ୍ତେ ।୧୭।

ଲୋକେ ତାହାକୁ ଯେ ଲେଖନ୍ତି ଅଗରେ ଉତ୍ତମ ବିଗ୍ରର
ଲୋଡ଼ା ଏହି କଥା ଲେଖିଛି ବାରତା ପଛରେ ମୋହୋର

୧୬-୨—ଯାବତ ପ୍ରେମରେ ଦୁଃଖ ଦେଲ (କ)
୧୬-୩—ଜାଣିଲି ବିଧାତା ପରସ୍ପେ ସସାରେ ନାହିଁଟି ଦାରୁଣ (ଖ)
୧୭-୪—ରହିଛି ଜଳରେ ଉତ୍ପଳ ଯେପରି ତା ହୃଦଯ ନ ଭେନ୍ତେ (ଗ)
୧୮-୧—ଲେଖନ୍ତି ଅହାରେ (ଗ)
୧୮-୨ ଲୋଡ଼ା ଏହିକଥା ଲେଖିଥିବାକୁ ତା ପଛରେ ମୋହର (ଖ)

ଲକ୍ଷେ ପ୍ରକାରେ ଅପରାଧ କଲେ ସେ ନୋହଇ ବାମନା
ଲଲିତଲପଣୀ ଷମା-ଜଳନଧି ଦୟୃତରେ ସୁମନା । ୨୮ ।

ବାଲା କୋମଳା ସୁଶୀଳା ଯେ ଲେଶେହେଁନ ଛଡ଼େ ଲୀଳାକୁ
ବଡ଼ ଆଭରଣ କରୁଥିବ ଏବେ ଲୋତକମାଳାକୁ
ବାହୁଡ଼ି ଅଉ ଦେଖିବ ନାହିଁ ବିଧୁବଦନୀ ବଦନ
ବିଧାତା ଏହା ସତେ କରିବ ଘିବ ମଦନ କଦନ । ୨୯ ।

ସବୁ ସହଇ ଏ ଦେହ ବସୁମତୀ ପରାୟେ ପ୍ରମାଣ
ଶଶୀମୁଖୀଙ୍କ ଦୁଖ ସୁଖ ଦେବାକୁ ମୁଁ ଅଗ କାରଣ
ଶୀର୍ଣ୍ଣ ହୋଇବ ପୂର୍ଣ୍ଣିମୀ ଚନ୍ଦ୍ରକଳା ପରାଏ ଏଣିକି
ଶିବ ଶିବ ଶିବ ରଖ ରଖ ରଖ ମୋ ପ୍ରାଣମଣିକି । ୩୦ ।

ଶକଳ ଚନ୍ଦ୍ରମା ହେଲେ ତୁମ୍ଭ ଶିର ମଣ୍ଡନ ଯେମନ୍ତ
ସକଳ ରୂପେ ସକଳଚନ୍ଦ୍ରମୁଖୀ ମୋହୋର ତେମନ୍ତ
ଶେଷ ନୋହେ ମନୋଭବ ନବଦଶା ଉଦରେ ଥିଲେହେଁ
ଶଙ୍ଖଚକ୍ରପାଣି ରଖିବେ ମୋ ଗୁଣମଣିକି ଭଲେହେଁ । ୩୧ ।

ସୁମର ଏହି ପ୍ରକାରେ ସୁନସ୍ୱାକ ପକାଇ ନିଶ୍ୱାସ
ସଜଳ ନୟନା ହୋଇ ହେଲେ ସେହି କଥାରେ ପ୍ରବେଶ
ସୁମରୁ ସୁମନ ସୁପୁରୁଷେ ଯଦି ହୁଅଇ ଘାନତା
ସୁମନସ ଶର ସରସ୍ୱତୀ ଧିକ ଧିକ ସେ ବିଧାତା । ୩୨ ।

କ ପୋଥିରେ ୨୯ ପଦର ୩ ଓ ୪ ପାଦ ୧ ଓ ୨ ପାଦରୂପେ ଏବଂ ୧ ଓ ୨ ପାଦ ୩ ଓ ୪ ପାଦରୂପେ ପଠିତ ।

ହୃଦରେ ଏହା ବିଚାରି ଉଦ୍ଧବଙ୍କୁ କହିଲେ ସନ୍ଦେଶ
ହଂସଗମନା ଗୋପୀଙ୍କି ତୁମ୍ଭେ ଯାଇ କରାଅ ସନ୍ତୋଷ
ହୋଇ ଅଛନ୍ତି ସେ ମୋ ସଙ୍ଗ ବିହୁନେ ସାରସ ସଦୃଶ
ହରଷ କରାଇ ତାଙ୍କୁ ତୁମ୍ଭେ ଯାଇ ହୋଇବ ଦିବସ । ୩୩ ।

କ୍ଷମାସାଗର ଆଜ୍ଞା ଘେନ ଉଦ୍ଧବ ଗୋକୁଳେ ପ୍ରବେଶ
କ୍ଷପାକରମୁଖୀ କ୍ଷିତିମଣ୍ଡନୀଙ୍କ କହିଲେ ସନ୍ଦେଶ
କ୍ଷୋଭ ଛାଡ଼ି ଗୋପୀ ନ ଛାଡ଼ିଲେ କେତେବେଳେହେଁ ଆଶକୁ
କ୍ଷେମେ ଦୀନକୃଷ୍ଣ ବୋଲେ ବଚନ କ ଦରିଦ୍ର ନାଶକୁ ।୩୪।



୩୩—୪—ହୃଦବଶ ରହ ତାଙ୍କୁ ତୁମ୍ଭେ ଏବେ ହୋଅ ଯାଇ ହଂସ [ଗ]

# ଉଦ୍ଧବ ଚଉତିଶା

ବିରହ-ବ୍ୟଥିତ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ବିରହ-ବିଧୁର ଗୋପିକାମାନଙ୍କ ନିକଟକୁ ଉଦ୍ଧବଙ୍କଦ୍ୱାରା ସନ୍ଦେଶ ପ୍ରେରଣ ଶ୍ରୀକୃଷ୍ଣଙ୍କ ବ୍ରଜାଙ୍ଗନା-ପ୍ରେମ-ପ୍ରସଙ୍ଗର ଗୋଟିଏ ଅତି କମନୀୟ ଓ କରୁଣ ଅଧ୍ୟାୟ । ଗୋପରେ ଉଦ୍ଧବ ଓ ଗୋପିକାଗଣଙ୍କ କଥୋପକଥନ ବ୍ରଜଭାବରସିକମାନଙ୍କର ପରମ ଧନ । ଉତ୍କଳର ଭିନ୍ନ ଭିନ୍ନ କବିମାନେ ନିଜର ବ୍ୟକ୍ତିତ୍ୱର ବିଶେଷତ୍ୱ ବଜାୟ ରଖି ତାହା ଭିନ୍ନ ଭିନ୍ନ ପ୍ରକାରେ ବର୍ଣ୍ଣନ କରିଅଛନ୍ତି । ଏତତ୍ ପ୍ରସଙ୍ଗୀୟ ଉଦ୍ଧବ ଚଉତିଶା ନାମକ ଖଣ୍ଡ କବିତା କେବଳ, ଆମ୍ଭେ ଗୋଟି ପାଞ୍ଚ ପ୍ରକାରର ପାଇଥିଲୁଁ । ଦୀନକୃଷ୍ଣଙ୍କର ଏହି ଉଦ୍ଧବ ଚଉତିଶାକୁ ଛାଡ଼ି ଦେଲେ ଅନ୍ୟ ମଧ୍ୟରେ ମୁକୁନ୍ଦ ଭୂପତି ପଣ୍ଡିତଙ୍କ ଉଦ୍ଧବ ଚଉତିଶା ତନ୍ମଧ୍ୟରେ ପ୍ରଧାନ । ଦୀନକୃଷ୍ଣଙ୍କ ଏହି କୃତିରେ ପ୍ରେମର ନିତ୍ୟ ସହଚର ଅଭିମାନ ଗୋପିକା ଖେଦୋକ୍ତିରେ ମୂର୍ତ୍ତିମନ୍ତ ହୋଇଅଛିପରି ବୋଧହୁଏ । ବସ୍ତୁତଃ କବିର ଲିପିନ୍ୟାସ ବଳରେ ମୂର୍ତ୍ତିହୀନ ଭାବକୁ ମୂର୍ତ୍ତିଦାନ କରିବାରେ ଦୀନକୃଷ୍ଣ ଧୁରନ୍ଧର ଲେଖଣୀ ।

ରାଗ କଉଶିକ

କହନ୍ତି ଗୋପୀ କୁସୁମଶରେ ତାପୀ ହୋଇ ଉଦ୍ଧବଙ୍କୁ ବଚନ ।
କୃପାସିନ୍ଧୁ ହୋଇକରି ଆମ୍ଭଠାରେ କି କଲେ କମଳଲୋଚନ ।
ଆହେ ଉଦ୍ଧବ ।
କି କହିବୁଁ ଆଉ ତାହାଙ୍କୁ
କର୍ମ ଅବଳଙ୍କୁ ଶଫଳ ନନ୍ଦନ ବିଫଳଙ୍କୁ ନେଲା ଆମ୍ଭଙ୍କ । ୧ ।

ଖୁଆ ଯେସନେ କ୍ଷୀର ମନ୍ଥି ଦହିଁରୁ ସ୍ନିଗ୍ଧ ବାହାର କରଇ ।
ଖାଇ ନ ପାରି ଦାରୁହସ୍ତ ପରାଏ ପରବଶେ ଭ୍ରମି ମରଇ ।
ଆହେ ଉଦ୍ଧବ ।
ଖଳସ୍ୱଭାବ ସେହିମନ୍ତ
ଖାଇବା ପିଇବା ନ ଥିଲା ସର୍ପର ପରାଏ ପରକୁ ନାଶନ୍ତ । ୨ ।

୧-୨—କୃପା ଆମ୍ଭଠାରେ ନ କଲେ (ଗ) ୧-୪—ଶଫଳ୍କ ନନ୍ଦନ (କ) ୨ ୧—ସ୍ନିଗ୍ଧକୁ ବାହାର କରଇ (ଗ)

ଗଲା ମର୍କତକଣ୍ଠିମାଳୀ ଅମ୍ବର ଗଣ୍ଠିଆ ହାତରେ ବହିଲା ।
ଗୁଆଁରଙ୍କୁ ଗୁଣବନ୍ତ ଅଗ୍ରେ କଲା ପ୍ରାପ୍ତେ ସବୁ ସୁଖ ବୁଡ଼ିଲା ।
ଅହେ ଉଦ୍ଧବ ।
ଗୁହାରି କରିବୁଁ କାହାକୁ
ଗାଈବାରଣ ବାଡ଼ ଶସ୍ୟ ଭକ୍ଷିଲେ ଅଉ କେ ରକ୍ଷିବ ତାହାକୁ । ୩ ।

ଘେନାଇ ଗଲା ନୃପ କଂସ ଆମର ଗୋପପୁର-ଅବତଂସଙ୍କୁ ।
ଘଡ଼ିଏ ନୟନେ ଦେଖି ନ ପାରିଲେ ଅନ୍ଧାର ଯେମନ୍ତ ହଂସଙ୍କୁ ।
ଅହେ ଉଦ୍ଧବ ।
ଘେନଥିବ ମନେ ସେ କଥା ।
ଘାତ କରଇ ଯେ ଯାହା ସୁଖ ତାହା ସୁଖ ନାଶ ଯାଇ ସର୍ବଥା । ୪ ।

ନୃପତି ହୋଇ ମାତିବନ୍ତ ନୋହିଲେ ନକଟେ ଭେଟିଲ କାଳଙ୍କୁ ।
ନାବ ନ ଥିଲେ ତରି ନୋହେ ଯେମନ୍ତ ଅଗାଧ ସମୁଦ୍ର ଜଳଙ୍କୁ ।
ଅହେ ଉଦ୍ଧବ ।
ନଷ୍ଟେ ଗୁଣି ମୂଳ ସ୍ୱଭାବ ।
ନବଘନ ଶ୍ୟାମ ନ ଜାଣନ୍ତି କାହା ଭାବେ କ୍ଷ ନ କଲେ ଅଭାବ । ୫ ।

ଚାଟୁବଚନ ସେ ଯେତେକ କହନ୍ତି ଚନ୍ଦ୍ର ଚନ୍ଦନରୁ ଶୀତଳ ।
ଚିତ୍ତ ଛଳ କେତେ ବଶ କରିବାକୁ ପାଷାଣ ହୋଇଯିବ ଜଳ ।

୪-୫—ଘାତ କରଇ ଯେ ଯାହାର ପୀରତ ନାଶ ହୋଇ ତାର ସର୍ବଥା (ଗ)

ଅହେ ଉଦ୍ଧବ ।

ଚତୁର ପଣ ମହିମାକୁଂ

ଚନ୍ଦ୍ରଚୂଡ଼ ଅନୁଭବ କରିଥିଲେ ଥିଲେ ପର୍ଯ୍ୟନ୍ତ ବ୍ରହ୍ମାଙ୍କୁ । ୬ ।

ଛର ପାମରୀ ଅଭୀରୀ ନାରୀ ଅମ୍ଭେ ବନଚରୀ ସିନା ଦୁର୍ବୁଦ୍ଧି ।
ଛନ ପ୍ରବନ୍ଧ କଥା ଅମ୍ଭଠାରେ ସେ କ୍ଷମା ନ କରିବେ ପ୍ରସିଦ୍ଧି ।

ଅହେ ଉଦ୍ଧବ ।

ଛଇଳ ଭ୍ରମର ପୀରତି

ଛଇ ପରାୟେ ଖଣକୁ ଖଣ ଆନ ଜୁଅ କଉଡ଼ି ପ୍ରାୟେ ମତି । ୭ ।

ଯେତେ ରୂପେ ଅମ୍ଭେ ଭଜିଲୁଁ ତାହାଙ୍କୁ ଜଗତେ ଜାଣନ୍ତି ସେ କଥା
ଯେବେ ପ୍ରଭୁ ହୋଇ ଅବେଭାର କଲେ କେ ତାହା କରିବ ଅନ୍ୟଥା

ଅହେ ଉଦ୍ଧବ ।

ଯାହା କରଇ ପ୍ରରୂପଣ

ଜାଣିଥିବ ତାହା କେହି ନ କରଇ ମହାଦେବଙ୍କଠାରୁ ଜାଣ । ୮ ।

ଝସକେତୁକୁ ନୟନେ ପୋଡ଼ିଦେଇ ଅଙ୍ଗରେ ବହିଲେ ଯୁବତୀ
ଝୀନବସ୍ତ୍ର ତେଜି ଦିଗମ୍ବର ହେଲେ ମହାଦେବ ସେ ମହାଯତି ।

ଅହେ ଉଦ୍ଧବ ।

ଝାଡ଼ିବାଯୀ ତ ଅମ୍ଭେ ଛର

ଝର ପାଣି ପ୍ରାୟେ ବେଭାର ଅମ୍ଭର ସାରନ୍ତେ ହୋଇଲା ଅସାର । ୯ ।

୬-୪—କରିଛନ୍ତି (ଗ) କରିଥିବେ (ଘ)

୯-୪—ଝାଡ଼େ ବୃନ୍ଦ ତାଙ୍କ ସେବାରେ ଭଜିବା ଦଶିଲ ଥାନ୍ତୁ ଅବେଭର (ଘ) ସାରିଲେ
ହୋଇଲା ଅସାର (କ)

ନନ୍ଦବା ବନ୍ଦବା କଥାକୁ ଯାହାର ନ ଥାଇ ମନରେ ବିଗ୍ଭର
ନ ଦେନଇ ଯେ ହାନି ଲଭ ଆମ୍ଭର ଦୂରୁ ତାହାକୁ ନମସ୍କାର

ଆହେ ଉଦ୍ଧବ ।

ନ କଲେ ସେ କଉଁ ନିରାଶ
ନ କରିଥିଲୁ ଆମ୍ଭେ କଉଁ ଭରସା ଏବେହେଁ ନାହିଁ କଉ ଆଶ ॥

ନୈଲା ନାହିଁ ମନ ତାଙ୍କ ବାହାରେ ଅନଠାରେ ଆଉ ଆମ୍ଭର ।
ନେକ ତୃଷାର୍ତ୍ତ ଗ୍ଭତକ ଯେହ୍ନେ ଗ୍ରହ ପାଇଁ ଉପିଲା ଜଳଧର ।

ଆହେ ଉଦ୍ଧବ ।

ନୈଷ୍ଠୁରେ ସେ ଦୟା ନ କଲେ
ନେକରେ ଥୋଇ ନୋପରେ ପକାଇଲା ପ୍ରାୟେ ଆମ୍ଭଙ୍କୁ ନାଶ କଲେ ॥

ଠାକୁରବର ବୋଲି ବଡ଼ ଭରସା କରିଥିଲୁ ଆମ୍ଭେ ତାହାଙ୍କୁ
ଠକ ବେଭାର ଦେଖିଲା ଦିନୁ ସିନା ଚମକ ଉଠୁଅଛି ବୁକୁ ।

ଆହେ ଉଦ୍ଧବ ।

ଠାବ ନ କଲୁ ତାଙ୍କ ଚିତ୍ତ
ଠିକେ ସାତସ୍ୱରୁ ଗ୍ଭଗ ଜନମିଲା ପ୍ରାୟେ ତା ମାୟା ଅପ୍ରମିତ । ୧୬ ॥

୧୧-୨—ନୈକ ତୃଷିତ ଗଡକ ଯେହ୍ନେ ଗ୍ରହକାସ (ଗ)
୧୧-୨—ନୈକ ତୃଷିତ ଗ୍ଭତକ ଅଶା କଡ ରହିଲା ଯେହ୍ନେ ଜଳଧର (ଗ)
୧୧-୪—ପ୍ରାୟେକ କହି ନାଶ କଲେ (ଗ)
୧୨-୪—ଠାକୁରବର ହୋଇ ହରି (ଖ) ୧୨-୪—ଠକ ଅବେହର ଏହୁଠାରେ କଲେ ଲୁବ୍ଧା ସଙ୍ଗେ ପ୍ରୀତ କରି (ଖ)

ତକା କରବା ତରବାରୁ ରଖିବା ପଢ଼ିବା ଗଢ଼ିବା ଭାଙ୍ଗିବା
ତମ୍ଭ ପ୍ରତିପାଳ ପରାଣେ ମାରିବା କଥା ତାରତମ କରିବା ।
ଅହେ ଉଦ୍ଧବ ।
ତୋଳେ ତ ସବୁ ଦେଖୁଅଛ
ତାଙ୍କ କହିବନ୍ତ କପଟ ନ କର କେ ଅଗେ କଉଁ କଥା ପଛ । ୧୩।

ଥାଳେ ନୋହିବା କଥା ବଡ଼ ସୁଲଭ ହୋଇ ନୋହିବା ବଡ଼ଦୁଖ
ଥମ କହୁ ନାହୁଁ ସମସ୍ତ କଥାକୁ କାରଣ ଥାଙ୍କ ପଦ୍ମମୁଖ ।
ଅହେ ଉଦ୍ଧବ ।
ଥେଉ ଯେସନେ ମୃଗତୃଷ୍ଣାରେ
ଥକୁଅଛୁ ମନ ହୋଇ ଛନଛନ ଏବେ ଥାହାଙ୍କର ଆଶାରେ । ୧୪ ।

ଅଣ୍ଟେ କର ବଡ଼ଲୋକଙ୍କୁ ଅଦୃଷ୍ଟ ଆଦର ଯେବେ ଦୁଖ ପାଇ ।
ଏମନ୍ତ ହେଲେ ଅଗମ୍ୟ ବନସ୍ତରେ ପଶି କର୍ମ୍ମ ବୁଲୁ ନ ଥାଇ ।
ଅହେ ଉଦ୍ଧବ ।
ଆମ୍ଭର କର୍ମ୍ମ ଥାଆନ୍ତା ଯଦି
ଏମନ୍ତ କର୍ମ୍ମ ହୁଅନ୍ତେ ସତ୍ୟ ସତ୍ୟ କର୍ମ୍ମ ନୁହନ୍ତେ ସତ୍ୟବାଦୀ । ୧୫।

ଥାରିବା ଲୋକ ମାରିବାକୁ ବସିଲେ ତହିଁକ ଅଛୁ କ ଉପାୟେ
ଥଥାପି ଧର୍ମ୍ମ ପାରିଲେ ତରି ପାରି ଅମ୍ଭେ ତ ବନ ପଶୁପ୍ରାୟେ ।
ଅହେ ଉଦ୍ଧବ ।
ସ୍ତ୍ରିଶ ମାରଣେ ସେ ଦାରୁଣ
ଥୋଟ ଚପିବା ଥାଳୁ ଫୋଡ ମାରିବା ଥାଙ୍କଠହୁଁ ହେଲୁ ଭିଆଣ ।୧୬।

୧୩-୪—ସେ ମାୟାଧରକୁ କେ ଅଗ (ଗ)

ଥାନ ବିଶେଷେ ସ୍ୱାତୀ ଜଳ ପଶିଲେ ଗୁଣହିଁ କରନ୍ତି ଅପାର ।
ଥିଲା ନାହିଁ ମନେ କୁବୁଜାକୁ ଦେଖି କଲେ ସୁନ୍ଦରୀ-ଅଲଙ୍କାର ।
ଅହେ ଉଦ୍ଧବ ।
ଥାଇ ଯାହାକୁ ଯଉଁ ଯୋଗ
ଥାଣୁ ଶିରକୁ ଚନ୍ଦ୍ରମା ଗଲା ପ୍ରାୟେ ତାହା ଇଚ୍ଛାୟେ ହୋଏ ଭୋଗ ।୧୭

ଦାହ ସମୁଦ୍ରେ ଅମୃତ ଦେଲା ପ୍ରାୟେ ନ୍ଠୁଅଛୁ ଯଉଁ ସନ୍ତାପ
ଦୁଃଖକର ତାହା କହିଲେ କି ହେବ କରଛୁ ଅମ୍ଭେ ମହାପାପ ।
ଅହେ ଉଦ୍ଧବ ।
ଦଇବର ସବୁ ଘଟନା
ଦୀନବନ୍ଧୁ ହୋଇ ଦୁଃଖକାଳେ ପ୍ରଭୁ ଦନେ ନୋହିଲେ ଅସି ସେହ୍ନା ।୧୮।

ଧର୍ମ ପୁରୁଷ ସେ ଅଧର୍ମ କରିବା ନୁହଇ ତାହାଙ୍କ ବେଭାର
ଧାର୍ମିକ ବିବେକ ରସିକବର ସେ ସମସ୍ତ ଗୁଣର ଆଧାର
ଅହେ ଉଦ୍ଧବ ।
ଧଇର୍ଯ୍ୟ-ନିଧିଙ୍କ କହିବ
ଧ୍ରୁବ ବଚନ ଯେ ଅଧ୍ରୁବ ହେଉଛି ଧରଣୀ କେମନ୍ତେ ରହିବ ।୧୯।

ନୟନ ମନ ନ ଛାଡ଼ିଲା ତାହାଙ୍କୁ ଏହି କଥା ହେଲା ପ୍ରମାଦ
ନ ଗଲା ଅନାଥ କଲେହେଁ କେବେହେଁ ଶ୍ରୀଗୋପୀନାଥ ଅପବାଦ
ଅହେ ଉଦ୍ଧବ ।
ନଅଇ ମଧୁ ପୁଷ୍ପକର
ନିଷ୍ଫଳ ଭାଗ୍ୟବଶରୁଁ ଭୃଙ୍ଗ ଦେଖ ନାମ ବୋଲାଇ ମଧୁକର ।୨୦।

ପରମ ଆନନ୍ଦ ହଉଥିଲେ ଅମ୍ଭର ପରମାନନ୍ଦ ନାମ ବହି
ପ୍ରୀତିଠାରେ ନାନ୍ଦ ଅବେଭାର କଲେ ପ୍ରଭୁମାନଙ୍କ ସାଙ୍ଗ ଏହି ।

ଅହେ ଉଦ୍ଧବ ।

ପଞ୍ଚଶବନ୍ତି ବାରେ ଯାଇଁ
ପରମ ଅମୃତ କୁଣ୍ଡେ ବୁଡ଼ିମଲେ ମଠବାର ସେ କ ନୁହଇ । ୨୧ ।

ଫୁଲ୍ଲାରବିନ୍ଦ-ବଦନ ଫେଡ଼ି କର କହିଗଲେ ଯାହା ଶ୍ରୀମୁଖେ
ଫନା କରି ସେହି କଥାମାନ ଗୋପୀ ଜନ ବଞ୍ଚୁଛୁ ନାନା ଦୁଃଖେ
ଅହେ ଉଦ୍ଧବ ।

ଫୁଲଶର ନେଲା ଫରୁଣା
ଫୁଲ ଚୁମ୍ବିଗଲା ଭ୍ରମର ପରାପ୍ତେ ହନେହେଁ ନ କଲେ କରୁଣା ॥

ବୋଲନ୍ତି ଏ ବଡ଼ ବଡ଼ମାନଙ୍କର ବଡ ବଂଶର ବଡ ବୁଦ୍ଧି
ବୋଇଲା ବଚନ ବ୍ୟର୍ଥ ନ କର ବିଶେଷେ କରନ୍ତି ପ୍ରସିଦ୍ଧି ।

ଅହେ ଉଦ୍ଧବ ।

ବେଳେହେଁ ତାହା ନ ରଖିଲେ
ବଶ ହୋଇ କୁବୁଜାଙ୍କ ପ୍ରେମରସେ ଏହି କଥା ନବ ଶିଖିଲେ ।୨୩।

୨୧-୨—ପୀରିଠାରେ ନନ୍ଦେ (ଖ) ଅବେହର କର (ଙ) ୨୧—ପ୍ରୀତିଠାରେ ନନ୍ଦେ (ଖ) ଅବେହର (ଙ) ୨୧-୪—ଥରେ ଯାଇଁ (ଖ)
୨୨-୧—ଫୁଲ୍ଲାର ବନ୍ଦ ନୟନ (ଙ) ୨୨-୨—ଫନ କର (ଖ) କେହିକଥା କେ ପୀ (ଙ)
୨୨-୪—ଫୁଲ ଚୁମ୍ବିଣ ଭ୍ରମର ପାଖେ ଅଉ କେ କେନ ତାହାଙ୍କୁ କରୁଣ (ଙ)
୨୩-୧—ବୋଲନ୍ତି ଯେ ବଡବଡଙ୍କର ବଳ ବଳ ଚ (ଖ) ୨୩-୨—ବେଳେ ନେ ହରନ୍ତି ପ୍ରସିଦ୍ଧି (ଙ) ୨୩-୪—କୁବୁଜାର ପ୍ରେମରସେ (ଙ)

ଭବଗ୍ରାହୀ ଭାବ ଗ୍ରହଣ କରିବା ଭ୍ରମର କୁସୁମ ଚୁମ୍ବିବା
ଭଲ ମନ୍ଦ ପାହେ ବସ୍ତୁରନ୍ତି ନାହିଁ ଭାଗ୍ୟ କି ନ କରଇ ଅବା ।

ଅହେ ଉଦ୍ଧବ ।

ଭାବେ ଯେ ଅଭାବ କରିବା
ଭଲ ନୁହଇ ଯେ ଭଲ ଲୋକଙ୍କର ଭ୍ରମର ସ୍ୱଭାବ ଧରିବା । ୧୪ ।

ମହତ ଲୋକଙ୍କୁ ଆଶ୍ରେ କରିବାର ପୋତ ବାଣିଜ୍ୟ ପ୍ରାୟେ ଜାଣ
ମହା ସାହସ ମହା ଅଣ ସକାଶୁଁ ମୁହୂର୍ତ୍ତିକେ ଯାଇ ପରାଣ ।

ଅହେ ଉଦ୍ଧବ ।

ମହତହୀନ ଲୋକେ ପ୍ରୀତି
ମହାନଦୀ ପ୍ରାୟେ ବଢିବା ଅଧିକା ଯେହ୍ନ କି ନୋହଇ ଅଜାଡ଼ ।୧୫।

ଯେମନ୍ତେ ପୂର୍ବେ କପିଳ କୋପାନଳେ ଦହିଲେ ସଗର-ତନୟେ
ଜଳୁଛୁ ଜଗତେ ସେହି ପରକାରେ କାମ ଅନଳେ ଆମ୍ଭ କାୟେ ।

ଅହେ ଉଦ୍ଧବ ।

ଯଉଁ ପ୍ରଭାକର ତହିଁକ
ଜଗତ ଅଧୀନ ଆମ୍ଭ ପ୍ରାଣଧନ ଦେବ କୃଷ୍ଣ-ଭଗୀରଥିକ । ୧୬ ।

୧୪-୨—ଭଲମନ୍ଦ ଆଉ (ଗ) ୧୪-୩—ଭାବରେ ଅଭାବ (ଗ) ୧୪-୪—ଭ୍ରମର ସ୍ୱରୂପ ଧରିବା (ଖ)

୧୫-୨—ମୁହୂର୍ତ୍ତେ ଦେଇଣ ପରାଣ (କ) ୧୫-୪—ସହଜ ତ ନୋହେ ଅଜାଡ଼ (ଗ)

୧୬-୧—ହୋଇଲେ ସଗର (ଖ) ୧୬-୨—ଜଳୁଛି ସେହି ପ୍ରକାରେ ନଗନ୍ତରେ (ଚ) ୧୬-୩—ପ୍ରଭାକାର ଏତକ (ଗ)

ରହୁଥିବ କୀର୍ତ୍ତି ଯେତେଦିନେ ପ୍ରୀତି ବିରହ ହୋଇ ଗୋପୀ ମଲେ
ରାଜୀବଲୋଚନ ଘନଶ୍ୟାମ କାମ-ହାଥରେ ତାଙ୍କୁ ଅଗ୍ନି ଦେଲେ ।

ଅହେ ଉଦ୍ଧବ ।

ରତିର ପ୍ରତିଫଳ ଏହି

ରାତି ଦିବସ ରସି ତାଙ୍କ ରସରେ କାମ-ଅନଳେ ହେଲୁଁ ଦହି । ୧୭ ।
ଲୋକ ମଧ୍ୟରେ ଦେଖିଲୁ ନାହିଁ ନେତ୍ର ଶ୍ରବଣମଣ୍ଡନ ପ୍ରୀତିକି
ଲେଶେ ଅଙ୍ଗରୁ ଅନ୍ତର ନ କରନ୍ତି ସ୍ନେହ ଭାବରୁ ଯାବତୀକି

ଅହେ ଉଦ୍ଧବ ।

ଲଲାଟେ ଲେଖନ ପ୍ରମାଣ

ଲୋଭ କରି ରତ୍ନାକରେ ବୁଡ଼ିଗଲେ ରତ୍ନ କି ଲଭୁଥାଇଁ ପୁଣ । ୧୮ ।
ବାଇ ପ୍ରାପ୍ତେ ହୋଇ ବନ୍ଧୁତ କହିଲେ ତହିଁରୁ କି ହେବ କାରଣ
ବଡ଼ ବଡ଼ଙ୍କୁ ବୋଧ କରି ନୁହଇ ବିବେକ ନ ଥିଲେ ପ୍ରମାଣ ।

ଅହେ ଉଦ୍ଧବ ।

ବିବେକବର ହୋଇ ହରି

ବଡ଼ ଅବେଭାର ଏହିଠାରେ କଲେ କୁବୁଜା ସଙ୍ଗେ ପ୍ରୀତି କରି । ୧୯ ।

୧୭-୧—ରହୁଥାଉ କୀର୍ତ୍ତି···ବିଚ୍ଛେଦ ହୋଇ (ଗ) ୧୭-୨—ଘନ ଶ୍ୟାମ କାମ ହାତରେ (କ) ୧୭-୪—ରସିକ ଭ୍ରମର ରସାନ୍ତର ହେଲେ ରସନ୍ତୁ ନାହିଁ ସ୍ନେହ ବହି (କ)

୧୮-୧—ଦେଖିବା ନାହିଁ ନେନ୍ତ (ଗ) ୧୮-୨—ଅଙ୍ଗରୁ ବାହାର·····ସ୍ନେହବଶରେ ପାର୍ବତୀଙ୍କି (ଗ) ୧୮-୪—ରତ୍ନାକରରେ ବୁଡ଼ିଲେ ରତ୍ନ କି ଲଭୁଥାଇ କାଣ (ଗ)

୧୯-୧—ବନ୍ଧୁତ କହିବା ଏଥିଁ ଅବା କେଉଁ କାରଣ (ଖ) ୧୯-୨—ବଡ଼ଙ୍କୁଟେ ବୋଧ କର ନୋହେ (ଗ) ୧୯-୩—ହୋଇ କର (ଘ)

ସବୁହିଁ ସୁନ୍ଦର ପ୍ରଭୁପଣ ଥିଲେ ଜଗତେ ଯେତେ ଅସୁନ୍ଦର
ସର୍ପ ଶଯ୍ୟାନ ହରି ହର ଉଲଗ୍ନ ହେଲେ କଷ୍ଟ ନାହିଁ ବିସ୍ତର ।
ଅହେ ଉଦ୍ଧବ ।
ଶୁକଲେ କଲା ଥିଲା ପ୍ରାଏ
ସ୍ନାନ ହୋଇ ବଡ଼ ଲୋକେ ଅବେଭାର ଦଶେ ବନ୍ଧୁତ ଦୂରଯାଏ ॥

ସେମାନ କହିବାରୁ ମାନହାନ ସେ କଉଁ ଲାଭ ତହୁଁ ଆମ୍ଭର
ସହଜେ ଅରଦ୍ର ବାଣିଜ ଲୋକର ବୋହିତ ଚନ୍ଦ୍ରା ଅବେଭାର ।
ଅହେ ଉଦ୍ଧବ ।
ସବୁରୂପେ ଅମ୍ଭେ ଅସାର
ସୁତ ପତି ଛାଡ଼ି ଶରଣ ପଶିବା ଦୋଷ ନ ଧରିବେ ଶ୍ରୀଧର । ୩୧ ।

ଶେଷର ହୃଦେ ଦଣ୍ଡବତ ଆମ୍ଭର କହିବ ସେ ପ୍ରୀତିହରଙ୍କୁ
ସଙ୍ଖୁଳିଲେ ବୋଲି କହିବ ଆମ୍ଭର କୁବୁଜା-ନାଗରୀବରଙ୍କୁ ।
ଅହେ ଉଦ୍ଧବ ।
ସେ ସିନା କରୁଛନ୍ତି ପର
ସହସ୍ରେ ଅଂଶରୁ ଅଂଶେ ତ ଆମ୍ଭର ତାଙ୍କଠାରେ ନାହିଁ ଅନ୍ତର । ୩୨ ।

୩୦-୩—ସବୁରୂପେ ଅମ୍ଭେ ଅସାର (ଖ) ୩୦-୪—ସହଜେ ଦରିଦ୍ର ବାଣିଜ୍ୟ ଲୋକର ବୋହିତ ଚନ୍ଦ୍ରା ଅବେହାର (ଖ)
୩୧-୧—କହିବାର ମାନହାନ···ଏଥି ଆମ୍ଭର (ଗ) ୩୧-୩—ଶୁକଲେ କଲା ଥିଲା ପ୍ରାଏ (କ) ୩୧-୪—ସ୍ନାନ ହେଲେ ଲୋକ ବଡ଼ ଅବେହାର ଦଶେ ବନ୍ଧୁତ ଦୂର ଯାଏ (ଖ)
୩୨-୧—ଶେଷର ହୃଦ (ଖ) ୩୨-୨—ସଙ୍ଖୁଳିଲ ବୋଲି (କ), କୁବୁଜା ନାଗରୀବରଙ୍କ (କ) ୩୨-୩—ସେ ଥାନ କରୁଛନ୍ତି (ଖ)

ହାଥ ଧରି ଅମ୍ଭେ କହୁଛୁ ତୁମ୍ଭଙ୍କୁ ଏବେକ କହିବ ତାହାଙ୍କୁ
ହତ ଆଦର କଲ ପ୍ରାୟେ ଅମ୍ଭଙ୍କୁ ଆଉ ନ କରବେ କାହାକୁ ।
ଅହେ ଉଦ୍ଧବ ।
ହସ କଉତୁକ ବେଳରେ ।
ହରଷ ହୋଇ ଜଣାଇବ କରୁଣା ଥିଲେ ହୃଦୟ-କମଳରେ । ୩୩ ।

କ୍ଷୁଧା ନ ଥିଲେ ଅମୃତ ନ ରୁଚଇ କ୍ଷୁଧାରେ ସମସ୍ତ ମଧୁର
କ୍ଷମାସାଗର ନାଗରବର କ୍ଷୁଧା ହୋଇ ସେ ଅଛନ୍ତି ଆମ୍ଭର ।
ଅହେ ଉଦ୍ଧବ ।
କ୍ଷମେ ଯାଇ ବେଗେ ଜଣାଅ
କ୍ଷୀଣମତି ଦୀନକୃଷ୍ଣ ବୋଲେ କ୍ଷୋଭ ଛଡ଼ାଇବା କଥା ଶୁଣାଅ । ୩୪ ।

୩୩-୧—ହସ୍ତଧରି ଏବେ—ଏବେହେଁ କହୁଛୁ ତାହାଙ୍କ (ଗ) ୩୩-୨—ଅମ୍ଭଙ୍କ ହତ ପ୍ରାୟେ (ଖ) ୩୩-୩—କଉତୁକ ବେଳରେ (କ)
୩୪-୧—ଅମୃତହିଁ ନ ରୁଚେ (ଖ) ୩୪-୨—କ୍ଷମାସାଗର ସୁଧାକର ଅଧର ହୋଇ ସେ ଅଛନ୍ତି (ଖ) ୩୪-୪—କଥା ଜଣାଅ (କ)



# ଗୋପୀସନ୍ଦେଶ ଚଉତିଶା

ଉପମାମୟ ଦୃଷ୍ଟାନ୍ତମାଳା ଦ୍ୱାରା ଏ ଚଉତିଶାରେ ଦୀନକୃଷ୍ଣ ଗୋପିକା ମାନଙ୍କ ଦୃଷ୍ଟାନ୍ତମାନର ଅଭିବ୍ୟକ୍ତି ବର୍ଣ୍ଣନା କରିଅଛନ୍ତି । ପାଠ କଲା ମାତ୍ରେ ପାଠକର ମନ ଶ୍ରୀକୃଷ୍ଣଙ୍କ ବ୍ରଜବିହାର-ମଧୁର ଉତ୍ସବର ଛନ୍ଦମୟ ଭାବ-ପ୍ରବାହରେ ଭେଳିଯାଏ ଯିବାପରି ବୋଧ ହୁଏ । ଏ ଭାବ ଓ ଭାଷା ସମ୍ପଦ ଦୃଷ୍ଟିରୁ ଗୋପୀ ସନ୍ଦେଶ ଚଉତିଶା ଗୋଟିଏ ରତ୍ନ ।

ଦଶ—ପରଜ ରାଗେ

କହନ୍ତି ସକଳ କଳାକର-ମୁଖୀ
ଗୋପୀମାନେ ଉଦ୍ଧବଙ୍କୁ
କହିବନ୍ତି ତୁମ୍ଭ କରିବ କୃପା—
ସିଦ୍ଧ ନାମ ମାଧବଙ୍କୁ । ୧ ।

ଖଳ କଂସ ବୋଲେ ମଥୁରା ଯାଇ ସେ
ଆସିବାକୁ ବୋଲି ଥିଲେ
ଖମଣ୍ଡଳୁ ଖସି— ପଡ଼ିଲା ଶଶୀର
ନଆ ପରାଏ ତ ହେଲେ । ୨ ।

ଗୋବର୍ଦ୍ଧନ ଧରା— ଧର-ଧରଙ୍କୁ ତ
କହିବଟି ଏ ପ୍ରସଙ୍ଗ

ଗରୁ ଯଉବନ          ଗତାଇ ପ୍ରାୟେ ତ
    ପୁରୁଷଙ୍କ ପ୍ରୀତି ରଙ୍ଗ । ୩ ।

ଘେନ କହୁଥାନ୍ତି          ନୂଆ ନୂଆ ଯାକ
    ଭୂପଣକୁ ମୋଖି ପ୍ରାୟେ
ଘୁଣାକ୍ଷରେ ପ୍ରେମ—          ରସକୁ ପାଇଲେ
    କରନ୍ତି ଅନ ଉପାୟେ । ୪ ।

ନାଗରୀମାନଙ୍କ          କଟାକ୍ଷକୁ ଲକ୍ଷ
    ନାଗରମାନଙ୍କ ବୋଲ
ନାଶ କରି ଧୈର୍ଯ୍ୟ          ଦୁଃଖ ନ ଘେନନ୍ତି
    ଦଅନ୍ତି ଅନଙ୍ଗ ହାଲ । ୫ ।

ଗୃହୁଁ ଗୃହୁଁ ନାଶ          କୁହୁଡ଼ି ପରାୟେ
    ଚିତ୍ତ ଧନ ଚୋର କଲେ
ଚତୁର୍ବର୍ଗଦାୟୀ          ହୋଇ ତ ଆମ୍ଭଙ୍କୁ
    ଚିନ୍ତା ଦାନ ଦେଇ ଗଲେ । ୬ ।

ଛଇଳ ପୀରତି          ଭ୍ରମରଙ୍କ ରୀତି
    ଭୋଗ ହେବାଯାଏ ଥାଇଁ
ଛାଇ ପରାୟେ          କ୍ଷଣକେ ଅନ ହୋଏ
    ଅଉ ଲୋଡ଼ିଲେ ନ ପାଇ । ୭ ।

୩-୩—ଶମିଲ୍ଲ ପଦ୍ମାସ୍ତେ (ଗ) ୪-୩—ଲଘଠାନକୁ (ଖ)
୫-୩—ମୃଦ୍ଧ ଧଇର୍ଯ୍ୟ ହରନ୍ତ (ଖ)
୬-୨—ହଟେନେଟେ (ଗ) ୬-୩—ଠାଢା (ଖ) ୬-୪—ଚନ୍ତାମାନ (ଖ)
୭-୧—ଛଇଳଙ୍କ ପ୍ରୀତ (ଡ) ୭-୩—ହେଲେ (ଖ)

ଯାହା କହୁଥାନ୍ତି ଯୁବା ଯୁବତୀଙ୍କି
ରଢ଼ ପଦ୍ମ ଲକ୍ଷ୍ୟ ଦେଇ
ଯଉବନ କାଳୁ ଅନ୍ତର ହୋଇଲେ
କେ କାହାକୁ ପଚାରଇ । ୮ ।

ଝିମିଠେ ଆମ୍ଭ ଦୁଖ ଦେଖୁ ନ ଥିଲେ
ନେତ୍ର କପାଳ ପରାୟେ
ଝସକେତୁ ଶରେ ଦହି ହେଲୁ ଏବେ
ଦୟା ନ ବସିଲା ଦେହେ । ୯ ।

ନାହାଟନ୍ତ ଆଣ୍ଡେ କଲା ତରୁ ଯେସନେ
ଅଲପକେ ନାଶ ଯାଇ
ନାଲକ ଗୋପୀ ସେହିମନ୍ତ ହୋଇଲୁ
ନନ୍ଦନନ୍ଦନ କୁ ପାଇ । ୧୦ ।

ଟେକ ମାତ୍ର ଅଛୁ ଗୋପୀନାଥ ବୋଲି
ଚନ୍ଦ୍ର କଇରବ ପ୍ରାୟେ
ଟକାଏ ଅନ୍ତର ହୋଇଲେ ଏକା ସେ
କୁବୁଜାକୁ ଭୋଗ ହୋୟେ । ୧୧ ।

ଠାଠିକ ଜଣ ଜଣକେ କହୁଥାନ୍ତି
ଭ୍ରମର ସିନା ଏ କାହ୍ନେ

୮-୪ — କ ଜରଇ (କ)
୯-୨ — ନେତ୍ରପ୍ରଚଳ (ଗ) ୯-୩ — ଦହ (କ) ଅମ୍ଭେ (ଖ) ୧୦-୩ — ଆଉରଷ (ଗ)
ଛେଖର ହେଲୁ ଅମ୍ଭେ (ଖ)
୧୨-୧ — କ୍ଷଣେ କ୍ଷଣେ କହନ୍ତ (ଗ)

ଠାବକଲୁ ସବୁ ପ୍ରକାରେ ସନ୍ଦେଶ
ମାଳୀ ଜଳସଠ ପ୍ରାୟେ । ୧୨ ।

ତମ୍ଭ ପ୍ରତିପାଳ କାହିଁରେ ନୋହିଲୁ
କାକ ପ୍ରାୟେ ଶ୍ରମ ହେଲା
ଡାଳେ ବସିଲା ରାବିଲା ଶୁଆ ପ୍ରାୟେ
ସେ ବଚନ କାହିଁ ଗଲା । ୧୩ ।

ତମ କହି କହି ସବୁ ନାଶ କଲେ
ଏବେହେଁ ସେହି ପ୍ରସଙ୍ଗ
ଭାଲେ ଜାଣିଲୁ ତମ୍ଭେଅ ମାନଙ୍କର
ବୋଲ ସମୁଦ୍ର ତରଙ୍ଗ । ୧୪ ।

ଇନ୍ଦ୍ରଜାଲିକ ପ୍ରାୟେ କେତେ ପ୍ରକାରେ
କେତେ କଥା ଦେଖାଇଲେ
ଆନ କରି ସବୁ ପ୍ରକାରେ ସେ ମାୟା
ମନରେ ତ ରଖାଇଲେ । ୧୫ ।

ତଇଲ ବିନ୍ଦୁ ପାଣିରେ ପଡ଼ି ଯେସନେ
ବେଗେ ବିସ୍ତାର ଭଜଇ
ଧାତାଙ୍କ ପହିଲ ପ୍ରୀତି ସେହିମତ
ପଛକୁ ଶୁଖିଲା ନଈ । ୧୬ ।

୧୩-୩ – ଠାଏ ଶୂନ୍ୟ (ଖ) ।
୧୪-୧—ପକ୍ଷେ (ଖ), ତଥି କାହିଁ ଖ)

ଥିଲକୁ ବନ୍ଧୁ    ବାସନା ଫଳ ପ୍ରାୟେ
ତାଙ୍କ ଶ୍ରୀଅଙ୍ଗ ଛୁଇଁଲୁ
ଥୋକାୟେ କାଳ    ଭୋଗ ହୋଇ ଉଲ୍ଲାଗି
ମାଳ ପରାୟେ ହୋଇଲୁ । ୧୭ ।

ଦଇବେ ପୁରୁଷଙ୍କ    ପ୍ରୀତି ଭ୍ରମର
ପ୍ରାୟେ ପଙ୍କଜକୁ ପ୍ରମାଦ
ଦଶ ଚଉଦ ଲୋକରେ    ଲୋକ ହେବ
ବୋଲିବ ତାଙ୍କ ପ୍ରମାଦ । ୧୮ ।

ଧନ୍ୱ-ଧରକୁ    ଅଗସ୍ତି ଭଣ୍ଡି ଯାଇ
ଦକ୍ଷିଣେ ରହିଲା ପ୍ରାୟେ
ଧରଣୀଧର    ହେମନ୍ତ ଅମ୍ଭଙ୍କୁ
କରିଣ ଗଲେ ଥୋକାୟେ । ୧୯ ।

ନୂଆ ନୂଆ ଯାକ    ନମ୍ରତା ହୋଅନ୍ତି
ଗୁଣ ଦେଲା ଧନୁ ପ୍ରାୟେ
ନତନ୍ତ ସମ୍ପତ୍ତି    ଭୋଗକୁ ପାଇଲେ
ନଜରହିଁ ଥାନ ହୋଏ । ୨୦ ।

ପୂରୁଥାଇ ପୁର    ପାଦପଦ୍ମ ତଳେ
ଯେହ୍ନେ ବୈଷ୍ଣବଙ୍କ କାୟେ

୧୯-୨ – ନଦିଣ ଚଳେ (୯) ।
୨୦—ନୂତନତା ନବ ବନିତା ପାଇଲେ ଯାହା ନଥିବ କରନ୍ତି । ନଥିବ ମତରେ ପୂର୍ବତନ ପ୍ରୀତି ଅନେମାନେ ଭାନ୍ତି ନାସ । (୫)

ପକାଇ ଦେଇ ପାଖକୁ ଅତ୍ୟୋଉ
ଖେଳନ୍ତା ସାରଣୀ ପ୍ରାୟେ । ୨୧ ।
ଫାଟି ନ ଗଲା ହୃଦୟ ପୁଣି ବହୁ
କହିବାକୁ ଏହା କଲା
ଫଳଯାଇ ଯେବେ କୃଷିକ ଉଦ୍ୟମେ
ଶ୍ରମ ମାତ୍ରକ ରହିଲା । ୨୨ ।
ବହୁତ ସଙ୍କଟୁ ଉଦ୍ଧାରକର ଶୋକ—
ସମୁଦ୍ରେ ମେଲିଲେ ଯହୁଁ
ବାରଣ ସ୍ନାନ କଲା ପ୍ରାୟେ କହୁହଁ
କାରଣ ନୋହିଲା ତହୁଁ । ୨୩ ।
ଭୋଜନ ବନ୍ଦୁ ଭୋକୀ ମନ ଯେମନ୍ତ
ପ୍ରବେଶେ ନୋହିଲ ତୋଷ
ଭାବଗ୍ରାହୀ ଭଣ୍ଡି ଗଲାଦିନ ସବୁ
ଭାବଯାକ ହେଲା ବଶ । ୨୪ ।
ମହାପ୍ରଭୁଙ୍କ ଶ୍ରୀମୁଖୁ ଯା ଶୁଣିଛି
ବେଗେ କହ ଆମ୍ଭ ପାଶ
ମହେଶ ଅଙ୍ଗ ଗରଳ ଜ୍ୱାଳା ଦସ୍ତୁ—
ଜଳିଜାଲେ ହୋଇଯେ ନାଶ । ୨୫ ।
ଜୀବ ଥାଉଁ କାମ ଅନଳେ ଜଳୁଛୁଁ
ସଗର ପୁଅଙ୍କ ପ୍ରାୟେ
ଜଗମୋହନ କୃଷ୍ଣ— ଗଙ୍ଗା ବାହାରେ
ନାହିଁ ଶୀତଳ ଉପାୟେ । ୨୬ ।

ସ୍ୱର୍ଗୀବ ଲୋଚନ ଶ୍ରୀମୁଖ ଚନ୍ଦ୍ରମା
ଦେଖିବା ଭରସା ଥିଲା
ରଙ୍କ ରଜା ହେବା କାମନା ପରିପ୍ରାୟେ
ବଚନରେ ଭୋଗ ହେଲା । ୨୭ ।
ଲାବଣ୍ୟନିଧି ତନୁ ମନ ଉତ୍ତୃଷ୍ଟ
ବାତଚକ୍ର ପ୍ରାୟେ ହୋଇ
ଲୋକଲୀଳକୁ ଦେହ ମାତ୍ର ଧରନ୍ତି
ଅଦେହ-ଦଣ୍ଡକୁ ସହି । ୨୮ ।
ବରଜ ନାରୀଙ୍କ ବିକଳ ଦେଖିଣ
ଉଦ୍ଧବ ପ୍ରବୋଧ କରି
ବୋଇଲେ ତୁମ୍ଭ ତାହାଙ୍କ ପ୍ରୀତି-ନୀର
ଛୀରରୁ ଅ ଭେଦ ପରି । ୨୯ ।
ସେହିତ ତୁମ୍ଭଙ୍କ ହୃଦେ ଯେଉଁଛନ୍ତି
ତୁମ୍ଭର ସ୍ନେହ ସଦୃଶ
ସଲିଳ କାଚ — ଘଟରେ ଥିଲା ପ୍ରାୟେ
ହୋଇ ସେ ଅଛି ପ୍ରକାଶ । ୩୦ ।
ଶୂନ୍ୟ ଦ୍ରବ୍ୟ ସେ ସବୁଠାରେ ସମାନ
ବନଫୁଲ ବାସ ପ୍ରାୟେ
ସେହିରୂପେ ଖୋଜି ଯେ ଯେଉଁ ପାଉଇ
ତାହାର ସେହି ସେ ହୋଏ । ୩୧ ।

୨୮-୪—ଦୂଷଣ (ଢ)
୨୯-୪—ଛୀରରୁ (ଖ) ଅଭେଦ (ଖ)
୩୦-୧—ନୃତ୍ୟେ (ଖ) ୩୦-୩—ସତ୍ୟରେ ଅଛନ୍ତି (ଖ) । ୩୧-୨—ବନଫୁଲ ପୁଷ୍ପ
(ଢ) ୩୧-୩—ସବୁରୂପେ (ଖ) ୩୧-୪—ତାହାର (ଗ) ।

ଶାସ୍ତ୍ର ଶୁକ ପକ୍ଷୀ　　　କାହାର ନୋହନ୍ତି
　ଯେ ପେନ୍ତ ପାଳେ ତାହାର
ଶ୍ୟାମସୁନ୍ଦର　　　ଉଚିତ ସେହିମତ
　ହୃଦରେ ଭାବନା କର । ୩୨ ।

ହଟକର ହଠ　　　ହାଠଙ୍କ ପ୍ରାପ୍ତେ ଯେ
　ହାଥରେ ଥିଲେ ନ ଥାଇ
ହୃଦେ ଭାବୁଥାଅ　　　ଭଗତ ବନ୍ଧୁ ସେ
　ଭାବିଲେ ତାହାଙ୍କୁ ପାଇ । ୩୩ ।

ଯୋଗ ଛଡ଼ାଇ　　　ଗୋପୀଙ୍କି ବୋଧ କରି
　ଉଦ୍ଧବ ମଥୁରା ଗଲେ
ଯେମେ ଯାନକୃଷ୍ଣ　　　ବୋଲେ ସଙ୍ଖାସଦ
　ପ୍ରାପ୍ତେ କୃଷ୍ଣଙ୍କୁ କହିଲେ । ୩୪ ।



# ବଉଳ ଚଉତିଶା

ବନ୍ଦିନୀଙ୍କଠାରୁ କୋକିଳପକ୍ଷୀଦ୍ୱାରା ବିରହିଣୀମାନଙ୍କ ସନ୍ଦେଶ ପ୍ରେରଣ କୌଶଳରେ ଓଡ଼ିଶାର ଅପୂର୍ବ କୋଇଲି ସାହିତ୍ୟର ସୃଷ୍ଟି । ମଧୁ ସହଚର 'ବଉଳ' ଶ୍ରୀ ରାଧାଶ୍ରୀକୃଷ୍ଣଙ୍କ ପ୍ରୀତି-ଲୀଳାର ସହଚର ଓ ପ୍ରେମ-ବିନୋଦର ସାକ୍ଷୀ । ତେଣୁ ତାକୁ ସମ୍ବୋଧନ କରି କୋଇଲି ପରି ତା ଆଗେ ବିରହ ବିଧୁର ହୃଦୟର ଭାବ ଜ୍ଞାପନ ବିରହିଣୀ ଶ୍ରୀରାଧାଙ୍କ ପକ୍ଷରେ ସ୍ୱାଭାବିକ । ଆମ୍ଭେ ଦୀନକୃଷ୍ଣଙ୍କ ଛଡ଼ା ଅନ୍ୟ ଜଣେ କବିଙ୍କର ବଉଳ ଚଉତିଶା ମଧ୍ୟ ପ୍ରାପ୍ତ ହୋଇଅଛୁଁ । ବଙ୍ଗାନୁକରଣ ପ୍ରଭାବରେ ଓଡ଼ିଆ ସାହିତ୍ୟରୁ ପ୍ରଚଳିତ ବହୁ ରଚନା କ୍ରମଶଃ ଲୋପ ପାଇ ଯାଉଅଛି । ବଉଳ ଚଉତିଶାର ବୃତ୍ତ ଅଧୁନାତନ ଓଡ଼ିଆଙ୍କୁ ଏକାବେଳେ ନୂଆ ପରି ବୋଧ ହେବ । ଏହାର ଏକମାତ୍ର କାରଣ ପ୍ରାଚୀନ ସାହିତ୍ୟାନୁଶୀଳନର ଶୋଚନୀୟ ଅଭାବ ।

କହନ୍ତି ରାଧିକା ଦେଖି ରସାଳ ବଉଳ
କଂସପୁରେ ରହିଲେ ଗୋ ବଉଳ ! କୃଷ୍ଣ କାମପାଳ ଗୋ ବଉଳ !
କହୁଥିଲେ ଯେତେ ଯେତେ କଥା ତୁମ୍ଭମୂଳେ
କେମନ୍ତେ ତା ପାସୋରିଲେ ଗୋ ବଉଳ ! ପଡି କାହାମେଳେ ଗୋ
ବଉଳ ! । ୧ ।

ଖଣେ ନ ଛାଡ଼ନ୍ତି ତୁମ୍ଭ ବିକାଶ କାଳରେ
ଖଣ୍ଡିଗଲେ ତେତେ ସୁଖ ଗୋ ବଉଳ! ଏକେ ସେ କାଳରେ ଗୋ ବଉଳ
ଖୋସିଥିଲେ ତୁମ୍ଭଙ୍କୁ ସେ ଶିରେ ଚୋରା କରି
ଖରେ କାମେ ବଶହେଉ ଗୋ ବଉଳ ! ଦେଖି ଗୋପନାରୀ ଗୋ
ବଉଳ ! । ୨ ।

ଗଣ୍ଡରେ ଝଟକୁ ଥାଇ ମକର କୁଣ୍ଡଳ
ଗଞ୍ଜଇ ପୂର୍ଣ୍ଣିମୀ ଚନ୍ଦ୍ର ଗୋ ବଉଳ ! ଶ୍ରୀମୁଖ ମଣ୍ଡଳ ଗୋ ବଉଳ !
ଗୋରୋଚନା ତିଳ ଭାଲେ ନାସାରେ ମୁକୁତା
ଗେଲ୍ହାଇ କହିବା ଭାବ ଗୋ ବଉଳ ! ହାରଇ ବନିତା ଗୋ
ବଉଳ ! । ୩ ।

ଘଣ୍ଟ ଥାଇ କଣ୍ଟଦେଶେ ପଦକ୍ମ କାଛେଣୀ
ଘଣ୍ଟିଆଗୁଡ଼ କ ଶୋଭା ଗୋ ବଉଳ ! ଭକ୍ତ ଓଡଆଣୀ ଗୋ ବଉଳ !
ଘନ ଘନ କର ଦେଉ ଥାଇ ବେଣୁସ୍ୱନ
ଘରେ ମନ ଥିର ନୋହେ ଗୋ ବଉଳ ଦହଇ ମଦନ ଗୋ
ବଉଳ ! । ୪ ।

ନାନା ବର୍ଣ୍ଣେ ବନମାଳ ଲମ୍ବିଥାଇ ଉରେ
ନିରନ୍ତରେ ନ ଛଡନ୍ତ ଗୋ ବଉଳ! ଯାସୋର ଭସଲେ ଗୋ ବଉଳ!
ନୀଳମଣି ଅଙ୍ଗେ ଦିଶେ ଚନ୍ଦନ ଲେପନ
ନାଚୁଥି ଖଞ୍ଜନ ପ୍ରାଏ ଗୋ ବଉଳ ! ଚଞ୍ଚଳ ନୟନ ଗୋ
ବଉଳ । ୫ ।

ଚୂଳ ରଞ୍ଚିଥାଇ ଶିରେ ମୟୂର ପୁଚ୍ଛରେ
ଚଳିଥାଇ କେତେବେଳେ ଗୋ ବଉଳ! ଗାଈଙ୍କ ପଛରେ ଗୋ ବଉଳ
ଚମକାଉ ଥାଇ ଚିତ୍ତ ମନ୍ଦ ମନ୍ଦ ହସି
ଚକ୍ଷୁରେ ସେ ଶୋଭା ଏବେ ଗୋ ବଉଳ ! ଦିଶୁଅଛି ଆସି ଗୋ
ବଉଳ ! । ୬ ।

ଛନ୍ଦିଥାଇ ଗୁଞ୍ଜୁରି କାଇଞ୍ଚ ଗୁଞ୍ଜମାଳ
ଛଟକ କରଣ ଥରେ ଗୋ ବଉଳ ! ଗୁହିଁଥାଇ ଛାଳ ଗୋ ବଉଳ !
ଛଇଲ ପଣକୁ ତାକୁ ସମାନ କାହିଁଛି
ଛୁଆସିଂହ ଗନ୍ଧଦନୁ ଗୋ ବଉଳ ! ସେ ସୁଖ ଯାଇଛି ଗୋ
ବଉଳ ! । ୭ ।

ଯେତେକ ଆଭରଣ ଥିଲେ କାଇଂସି କଙ୍କଣ
ଯତନେହେଁ କରୁଥାଇ ଗୋ ବଉଳ । ଜଗତଭୂଷଣ ଗୋ ବଉଳ !

ଯେତେ ସୁଖ ଅମ୍ଭଙ୍କୁ ସେ ଗୋପରେ ଦେଇଛନ୍ତି
ଜୀବଥିବା ଯାଏ ତାଙ୍କୁ ଗୋ ବଉଳ ! ନୁହଇ ମୂରୁଛି ଗୋ
ବଉଳ ! । ୮ ।

ଝାଡ଼େ ବୃଳଥିଲେ ଝୁରୁଥାଉଁ ଗୋପବାଳୀ
ଝାଳେ ଝଳ ଯାଇଥାଇ ଗୋ ବଉଳ! ପଡ଼ି ଘୋଳୁଥିଲ ଗୋ ବଉଳ!
ଝଷ କେତନ ସନ୍ତାପ କାଳେ ତାସଙ୍ଗରେ
ଝିଙ୍କାରୀ ଭୃଙ୍ଗ ଝିଙ୍କାରେ ଗୋ ବଉଳ ! କବରି ଶିଖରେ ଗୋ
ବଉଳ ! । ୯ ।

ନେଇ ସବୁସୁଖ ଏବେ ମଥୁରା ରଖିଲ
ନାରେଖ କରି ଆମ୍ଭଙ୍କୁ ଗୋ ବଉଳ! କାହିଁ ନ ଲେଖିଲ ଗୋ ବଉଳ!
ନ ସରଇ ଧନ ଅଉ ତା ଗୁଣ ସୁମରି
ନଷ୍ଟେ ବଶକଲେ ତାଙ୍କୁ ଗୋ ବଉଳ ! ମଧୁପୁର ନାରୀ ଗୋ
ବଉଳ । ୧୦ ।

ଠେକି ଧଇଲେ ମନର ଆମ୍ଭର ହୃଦରେ
ଠେଲି ପକାଇଲେ ଏବେ ଗୋ ବଉଳ! ମଦନ ଠୋପରେ ଗୋ ବଉଳ!
ଠାଣପଣ ଯେତେ ଠାକ୍ରୁଠମାଳହିଁ ତେତେ
ଠିକାଏ ନ ସହେ ମାନ ଗୋ ବଉଳ ! ଅଭାବ ସଙ୍ଗତେ ଗୋ
ବଉଳ ! । ୧୧ ।

ଠାକୁର ପଣକୁ ତାଙ୍କ ପର ସେହି ଦିନା
ଠକସଙ୍ଗେ ପଡ଼ି ଏବେ ଗୋ ବଉଳ! ହେଲେ ଏତେ ଅନା ଗୋ ବଉଳ
ଠିଆ ହୋଇଥାଇ ତରୁ କଦମ୍ବମୂଳରେ
ଠାରୁଥାଇ କ କ କରି ଗୋ ବଉଳ ! ନୟନ କୋଣରେ ଗୋ
ବଉଳ ! । ୧୨ ।

ତକାଇତ ପଣେ ଏବେ ତକା କରି ଗଲ
ତୋଳାରୁ ମାର ବହିବା ଗୋ ବଉଳ ! ଆଉ ନ ରହିଲ ଗୋ ବଉଳ !
ତାକଲେ ଶୁଣନ୍ତା ନାହିଁ କାହାକୁ କହିବୁ
ତଙ୍ଗର ମଦନ-ଦୁଖ ଗୋ ବଉଳ ! କେତେଦିନେ ସହିବୁ ଗୋ
ବଉଳ । ୧୩ ।

ତାଲେ ଜାଣିଲୁଁ, ଦଇବ ଆମ୍ଭଙ୍କୁ ଛାଡ଼ିଲ
ତୋକଲ ଅମୃତ ଯାଇଁ ଗୋ ବଉଳ ! କା ହାଥେ ପଡ଼ିଲ ଗୋ ବଉଳ !
ତମ କହି ବୁଝାଇଲେ ଗୋପଯୁବତୀଙ୍କି
ତଗ ମେଲିବାକୁ କଲେ ଗୋ ବଉଳ ! ମଥୁରାନାଥଙ୍କି ଗୋ
ବଉଳ । ୧୪ ।

ଏହି କଥା ଅମୃତାରେ ଅସାର ସେ କଲେ
ଅମୃତ ଖୁଆଇ ଏବେ ଗୋ ବଉଳ ! ପଛେ ବିଷ ଦେଲେ ଗୋ ବଉଳ !
ଏହି ଘେନି ପିନା ପ୍ରାଣ ନ ଯାଇ ରହିଛି
ଅନୁବରତରେ ଏକା ଗୋ ବଉଳ ! ଅକୁଳ ହେଉଛି ଗୋ
ବଉଳ । ୧୫ ।

ତେଡ଼େ ତେଡ଼େ ସଙ୍କଟରୁ ରଖି ନ ରଖିଲେ
ତାହାଙ୍କୁ କି ବୋଲିବୁ ଗୋ ବଉଳ ! ତାଙ୍କର ସେ କଲେ ଗୋ ବଉଳ !
ତାପହର ବୋଲି ତାଙ୍କୁ ବୋଲୁଥାନ୍ତି ଲୋକେ
ତାହା ପ୍ରତଯ୍ୟେ ସେ କଲେ ଗୋ ବଉଳ ! ଦେଇ କାମ-ଶୋକେ ଗୋ !
ବଉଳ । ୧୬ ।

ଥଣ୍ଡ ଚର ବକାକୁ ମାଇଲ ଦନୁ ତାଙ୍କୁ
ଥେଣ୍ଡର ଉପରେ ଥେଣ୍ଡ ଗୋ ବଉଳ ! ବୋଲି ତାଙ୍କୁ ଶଙ୍କୁ ଗୋ ବଉଳ

ଥଳ ବୋଲି ଅଥଳେ ପଡ଼ିଲେ ମରିଯାଇଁ
ଥାଉଁ ଥାଉଁ ବୁଢ଼ି କେହି ଗୋ ବଉଳ ! ଅଥଳେ ପଡ଼ଇ ଗୋ
ବଉଳ । ୧୭ ।

ଦୟାନିଧି ବୋଲି ବଡ କରିଥିଲୁ ଆଶ
ଦୟାଯାକ କେଣେ ଗଲା ଗୋ ! ବଉଳ ହୋଇଲୁ ନିରାଶ ଗୋ ! ବଉଳ
ଦଣ୍ଡେ ଯେ ଯାହାକୁ ସେହିଥାଇ ବଡ଼ କରି
ଦୋଷ ଥିଲେ ନ ଥିଲେ ଗୋ ବଉଳ ! ତାକୁ ଦୂର କରି ଗୋ
ବଉଳ । ୧୮ ।

ଧର୍ମକୁ ସେହି ଛାଡ଼ିଲେ ଅମୃତ କି ଗଲା
ଧନ୍ୟପଣ ଅମୃତ ଗୋ ବଉଳ ! ଲୋକରେ ରହିଲା ଗୋ ବଉଳ !
ଧର୍ମଶୀଳ ବୋଲି ବୋଲୁଥାଆନ୍ତି ଜଗତେ
ଧରଣୀରେ ଥାଇ ତାଙ୍କୁ ଗୋ ବଉଳ ! କେ ଯିବ ପରତେ ଗୋ
ବଉଳ । ୧୯ ।

ନଷ୍ଟେଁ ତାଙ୍କ ଗୁଣ ଗୁଣି ଅମ୍ଭେ ନାଶ ଗଲୁଁ
ନଳଧରି ଶୁଆ ପ୍ରାଏ ଗୋ ବଉଳ ! ବେଭିରେ ହୋଇଲୁ ଗୋ ବଉଳ !
ନ ଅସିବେ ବୋଲି ଯା ଲଗାଇଲେ ପୀରତି
ନିତି ସେ ଆଶ କରନ୍ତେ ଗୋ ବଉଳ ! ହେଉଛି କରତ ଗୋ ।
ବଉଳ । ୨୦ ।

ପ୍ରୀତିଠାରେ ଅପ୍ରୀତି କରିବା ନୋହେ ଭଲ
ପ୍ରଭୁ ହେଲେ କି ହେବ ଗୋ ବଉଳ ! ମିଛ ଯେବେ ବୋଲି ଗୋ ବଉଳ !
ପୂତନା ପ୍ରାଣ ନେଲା ହେନୁଁ ତାଙ୍କୁ ଜାଣୁଁ
ପାପ ପୁଣ୍ୟ ଦୁଇ କଥା ଗୋ ବଉଳ ! ବିଗୁରିବା ଗୁଣୁଁ ଗୋ

ବଉଳ । ୨୧ ।

ଫଳେ ସିନା ଜାଣୁଁ ସବୁ ଭଲମନ୍ଦ କଥା
ଫେଡ଼ କେତେ କହିବୁ ଗୋ ବଉଳ ! ଫୁଲଶର ବଥା ଗୋ ବଉଳ !
ଫୋଡ ଅର୍ଦ୍ଧପୁର ଯେସନେ ବାହାର ହୋଇଲା
ଫୁରୁଣା ଯୋନ ଅମ୍ବର ଗୋ ବଉଳ ! ସେହିରୂପେ ଚଳ୍ଳ ଗୋ

ବଉଳ । ୨୨ ।

ବୁଝୁ ହୋଉଛୁ ବଦାର ସୁମର ତାହାଙ୍କୁ
ବାଇପ୍ରାୟେ ହୋଉଥାଉଁ ଗୋ ବଉଳ ! କହିବୁ କାହାକୁ ଗୋ ବଉଳ !
ବିବେକ ପଣ ଛାଡ଼ିଲୁ ଚିତ୍ତ ବିଭ୍ରମରେ
ବିପରୀତ ବୁଦ୍ଧି ହୋଇଲା ଗୋ ବଉଳ ! ପ୍ରୀତି କଥାଠାରେ ଗୋ

ବଉଳ । ୨୩ ।

ଭ୍ରସିଗଲା ଭେଳା ସେ ଯେ ଲଗାନ୍ତି କୂଳରେ
ଭସାଇ ତ ଏବେ ଦେଲେ ଗୋ ବଉଳ ! ବିରହ ଜଳରେ ଗୋ ବଉଳ !
ଭାବଗ୍ରାହୀ ଭରସାରେ ତାହାଙ୍କୁ ଭଜିଲୁଁ
ଭଗାଇ ହସାଇବାକୁ ଗୋ ବଉଳ ! ନିଜକୁ ତେଜିଲୁ ଗୋ !

ବଉଳ । ୨୪ ।

ମଉଳାକୁ ମାଇଲେ ଯେ ଧର୍ମକୁ ନ ଗଣି
ମାନ କରି ଥାଉ ଅମ୍ଭେ ଗୋ ବଉଳ ! ତାଙ୍କଠାରେ ପୁଣି ଗୋ ବଉଳ !
ମହାସୁଖ ଏବେ କୁବୁଜାକୁ ସବୁଠାରୁ
ମଣିବାର ବଡ଼ ସୁଖ ଗୋ ବଉଳ ! ଏହା ଶୁଣିମାରୁ ଗୋ

ବଉଳ । ୨୫ ।

ଜାଇଥିଲେ ସବୁ ଦେଖୁଥାଇ ଶୁଣୁଥାଇ

ଯାଉ ତ କାହିଁ ଜୀବନ ଗୋ ବଉଳ ! ଅଛୁ କାହିଁ ପାଇଁ ଗୋ ବଉଳ !
ଯେମନ୍ତେ ସବୁ କୁସୁମ ଭ୍ରମରଙ୍କୁ ସର
ଜାଣିଲୁ ସେହ୍ନେ ମତ ଗୋ ବଉଳ ! ପୁରୁଷଙ୍କୁ ନାରୀ ଗୋ
ବଉଳ । ୨୬ ।

ରସିକ ଭ୍ରମର ସବୁ ଭାବ ଘେନିଥାଇ
ରସ ପିନା ସବୁଠାରେ ଗୋ ବଉଳ ! ମନକୁ ରସଇ ଗୋ ବଉଳ !
ରଙ୍କ ରାଜା ହୋଇଲେ ସବୁହିଁ କରେ ଭୋଗ
ରାଜା ହୋଇ ରଙ୍କ ହେଲେ ଗୋ ବଉଳ ! ହୋଏ ସେହୁ ଯୋଗ ଗୋ
ବଉଳ । ୨୭ ।

ଲକ୍ଷ୍ୟେ କର ଯାହାକୁ ନ ପାନ୍ତି ବ୍ରହ୍ମା ଶିବ
ଲୋଭୀ ହେଲେ ତାଙ୍କଠାରେ ଗୋ ବଉଳ! ଆମ୍ଭର କ ହେବ ଗୋ ବଉଳ!
ଲୋଡ଼ି ଯାହା ପାଦ ସେବା ନ ପାଇ କମଳା
ଲୀଳାରେ ସେ କୁବୁଜାକୁ ଗୋ ବଉଳ ! କଲେ କଣ୍ଠମାଳା ଗୋ
ବଉଳ । ୨୮ ।

ବଡ଼ଲୋକମାନଙ୍କର ବଡ଼ ଅବେଭାର
ବୃଷଭ ଚଢ଼ିଲେ ହର ଗୋ ବଉଳ ! ଢେଁବେଢେଁ ସୁନ୍ଦର ଗୋ ବଉଳ !
ବୋଲି ଯାହା ଯାଇଥିଲେ ତାହା ତ ସେ କଲେ
ବଢ଼ିନଦୀ ସୋଲ ପ୍ରାଏ ଗୋ ବଉଳ ! ଗୋପନାରୀ ହେଲେ ଗୋ
ବଉଳ । ୨୯ ।

ସବୁହିଁ ସୁନ୍ଦର ଏକା ପ୍ରଭୁପଣ ଥିଲେ
ସୁନା ବନ୍ଧ ହେଲେ ନକ ଗୋ ବଉଳ ! ନ ବିକାଇ ଭଲେ ଗୋ ବଉଳ !
ସବୁ କହିପାରୁଁ ଆମ୍ଭେ ନ ବୋଲିବା କିଛି

ସବୁରୂପେ ସେ ଅମର ଗୋ ବଉଳ ! ଜୀବନ ନେଇଛୁ ଗୋ
ବଉଳ । ୩୦ ।

ସାନବଡ଼ ହୋଇ ଏ ଯେତେକ ବ୍ରଜବାସୀ
ସହସ୍ରେ କୋଣରେ ଥିଲେ ଗୋ ବଉଳ ! ଅମ୍ଭେ ତାଙ୍କ ଦାସୀ ଗୋ ବଉଳ
ସବୁଠାରେ ଅଛନ୍ତି ସେ ସବୁର ଠାକୁର
ସେ କପି ସେବକ ଠାରେ ଗୋ ବଉଳ ! କରିବେ ଅନ୍ତର ଗୋ
ବଉଳ । ୩୧ ।

ଷାଠିଏ ଦଣ୍ଡ ତାହାଙ୍କ ନାମ ଜପୁଥିବୁଁ
ଶରୀରେ ଜୀବନ ଥିଲେ ଗୋ ବଉଳ ! ତାଙ୍କୁ ନ ପାଶୋରିବୁ ଗୋ ବଉଳ !
ସବୁକଥା ଭଲ ଏକା କଥାକେ ବଳିବ
ଶ୍ରୀହରି ଶ୍ରୀହରି ବୋଲି ଗୋ ବଉଳ ! ଜୀବ ଯେବେ ଯିବ ଗୋ
ବଉଳ । ୩୨ ।

ହରି କୃପା କଲେ ସେ କଥାଇ ଦେବ ପୁଣି
ହରଷ ହୋଇଣ ଥାଅ ଗୋ ବଉଳ ! ହରିଙ୍କୁ ମେଳାଣି ଗୋ ବଉଳ !
ହୃଦରେ ଅମ୍ଭଙ୍କୁ ଏକା ଦୟା କରିଥିବ
ହରିଙ୍କି ଦେଖିଲେ ଏକା ଗୋ ବଉଳ ! ବାରତା କହିବ ଗୋ
ବଉଳ । ୩୩ ।

କ୍ଷମା କର ସବୁ ଦୋଷ ସୁଦୟା କରିବେ
କ୍ଷୋଭ ଛଡ଼ାଇ ସଂସାରେ ଗୋ ବଉଳ ! ପାଦ ସେବା ଦେବେ ଗୋ ବଉଳ !
କ୍ଷଡ଼ ଗଲୁଁ ବଉଳ ! କ୍ଷୋଭ ନ କରିବ
କ୍ଷେମେ ଦୀନକୃଷ୍ଣ ବୋଲେ ଗୋ ବଉଳ ! କୃଷ୍ଣ ଭଜୁଥିବ ଗୋ
ବଉଳ । ୩୪ ।



# ବାନ୍ଧବୀ ଚଉତିଶା

ବାନ୍ଧବୀ ଚଉତିଶା ତୁଲ୍ୟ ଦରଦୋଦ୍ବୋଧକ କାରୁଣ୍ୟଗର୍ଭ ରସମୟ କବିତା ଓଡ଼ିଆ ସାହିତ୍ୟରେ ବିରଳ । ଏ ଚଉତିଶାର ଭାଷାରେ ଓ ଛନ୍ଦରେ ଏପରି ଏକ ଐନ୍ଦ୍ରଜାଲିକର ପ୍ରଭାବ ଅଛି ଯେ ଏହା ପାଠ କଲେ ଚିତ୍ତ ଚମତ୍କୃତ ହୋଇ ଆପ୍ଳୁତ ହୁଏ । ଏହା ଯେ କବିଙ୍କ ପରିଣତ ପ୍ରତିଭାର ବିମୋହନ ବିକାଶ, କହିବା ବାହୁଲ୍ୟ ମାତ୍ର ।

କମଳଲୋଚନ କଂସ-କଣ୍ଟକରେ ଥାଇ
କିଶୋରୀରତନ ରାଧା ଚଉଦ ଚଢୋଇ ।
ଅହା ବାନ୍ଧବ ରେ! ।୧।

ଖଣେ ଯେ ପାଶରୁ ମୋତେ ନ କରୁ ଅନ୍ତର
ଗଲ ଦଇବ ବଶରୁ ହେଲୁ ଏତେ ଦୂର
ଅହା ବାନ୍ଧବ ରେ! ।୨।

ଗଳାରେ ବାହୁବଲ୍ଲୀ ବେଢ଼ାଇ ମୋହର
ଗେଲାଇ ଯେ ବୋଲୁଥାଉ ନୋହିବା ଅନ୍ତର
ଅହା ବାନ୍ଧବ ରେ! ।୩।

ଘର କରିଥାଇ ବନେ ତୋହ ପ୍ରୀତି ଘେନ
ଘର ଏବେ ଘୋର ହେଲା ଘନପୀନସ୍ତନ!
ଅହା ବାନ୍ଧବ ରେ! ।୪।

ଙେତ୍ର-ପଲ୍ଲବ ପଡିବା ନ ସହଇ ଦେହ
ଙିଷ୍ଠୁର ଦଇବ ସୁହାଇଲା ଏ ବିରହ
ଆହା ବାନ୍ଧବ ରେ ! ।୫।

ଚରାଇ ବୃନ୍ଦାବନରୁ ନେଉଥିଲେ ଧେନୁ
ଚିତ୍ତରେ ଦଣ୍ଡେକ ପ୍ରତେ କୋଟି କୋଟି ମନୁ
ଆହା ବାନ୍ଧବ ରେ ! ।୬।

ଛାଇ ସେ ଅନ୍ତର ହୋଏ ତୁ ନୋହୁ ଅନ୍ତର
ଛାଡି ତେଡ଼େ ସେନେହ ରହିଲୁ ଦୂରାନ୍ତର
ଆହା ବାନ୍ଧବ ରେ ! ।୭।

ଯାଉ ନାହିଁ ଜୀବନ ରହିଛି କାହିଁପାଇଁ ?
ଯାତନାବନ୍ତ ଲୋକଙ୍କୁ ଯମ ନ ନିଅଇ ।
ଆହା ବାନ୍ଧବ ରେ ! ।୮।

ଝୁରୁଛି ମୁଁ ଏଣେ, ତେଣେ ଝୁରୁଅଛୁ ତୁହି
ଝଲକ-ବଦନୀ ଆହା-କରନ୍ତା କେ ନାହିଁ
ଆହା ବାନ୍ଧବ ରେ ! ।୯।

ନେତ୍ରକୁ ମୋହର ଆଉ ନିଦ୍ରା ନ ଆସଇ
ନାଗେଶ୍ୱରତନ ତୋର ରୂପ ଗୁଣ ଧ୍ୟାୟି
ଆହା ବାନ୍ଧବ ରେ ! ।୧୦।

ଟଳ ପଡ଼ୁଅଛୁ ଅଙ୍ଗ ଅନଙ୍ଗ ଅବଶେ
ଟେକସ୍ତମ୍ଭ କି ହୋଇଥିବୁ ତାହାର ପାଶେ
ଆହା ବାନ୍ଧବ ରେ ! ।୧୧।

ଟିଆ ହେଲା ରୋମପ୍ରାନ୍ତେ ଲାଗିଅଛି ଶର
ଠକ-ଚନ୍ଦ୍ରମୁଖୀ ଯେତେହେ ଶଙ୍କା-ଶରୀର
ଆହା ବାନ୍ଧବ ରେ ! ।୧୨।

ଡେଉର ହୋଇ ବସିବାକୁ ନାହିଁ ମୋ ଭରସା
ଡମ୍ବରୁମଧ୍ୟା କି ହୋଇଥିବ ତୋହ ଦଶା
ଆହା ବାନ୍ଧବ ରେ ! ।୧୩।

ଢାଳେ ବହି ଦୁହିଁଙ୍କି ଯା ଅନ୍ତରେ ରଖିଲା
ଢମ କାମ ସବ୍ୟସାଚୀ ସାଧନା ଶିଖିଲା
ଆହା ବାନ୍ଧବ ରେ ! ।୧୪।

ଅଙ୍ଗେ ଅନୁଭବ କରଥିଲେ ଜାଲାବଢ
ଏତେକେ ବିଯୋଗୀ ଅଙ୍ଗ ଦଅଇ ସେ ଜାଳ
ଆହା ବାନ୍ଧବ ରେ ! ।୧୫।

ତହିଁ ଉପରେ ନ ହେଲା ସହଜେ ନିଷ୍ଠୁର
ତୋହର କଥାକୁ ମୋର ହେଉଛି ବିସ୍ମର
ଆହା ବାନ୍ଧବ ରେ ! ।୧୬।

ଥାଉ ଥାଉ ମୋର ପାଶେ ଥରୁ ତାର ଭୟେ
ଅସ୍ଥିର-ହୃଦୟୀ ଏବେ କରିବ ଅଥୟେ !
ଆହା ବାନ୍ଧବ ରେ ।୧୭।

ଦ୍ୱିରଦରାଜଗମନା ଦ୍ୱିଜରାଜମୁଖୀ
ଦୁଷ୍ଟ କାମ ବାଣେ ତୋତେ କରାଇଲା ଦୁଃଖୀ
ଆହା ବାନ୍ଧବ ରେ ! ।୧୮।

ଧିକ ମୋର ଧଇର୍ଯ୍ୟ ମୁଁ ଧରିଛି ପରାଣ
ଧରଣୀ-ମଣ୍ଡନ ! ତୁ ପାଇଲୁ ଏ କଷଣ
ଅହା ବାନ୍ଧବ ରେ ! ।୧୯।

ନିଷ୍ଠୁର ନାହାକୁ ଯେଉଁ ନାଶି କରେ ଅଘ
ନିଷ୍ଟେ ନାଶ ଯାଉ ଯେନ୍ତେ ଶଶୀରେ ସାରମ୍ଭ
ଅହା ବାନ୍ଧବ ରେ ! ।୨୦।

ପରାଣରେ ଯେବେ ଅଛୁ ତୋତେ ପରାହର
ପ୍ରାଣମଣି ତୋତେ ଏବେ କହିବ କି କର
ଅହା ବାନ୍ଧବ ରେ ! ।୨୧।

ଫାଟି ଯାଉନାହିଁ ହିଆ କହୁଅଛି ଏହା
ଫୁଲଶର ପାଶେ ତୋତେ ପକାଇଲି ଯାହା
ଅହା ବାନ୍ଧବ ରେ ! ।୨୨।

ବିରହ ବ୍ୟାଧିକି ବିହି ନ କଲା ଔଷଧି
ବିବେକୀ ନୋହିଲ ସେ ବୋଲାଇ ବିଜ୍ଞା ବିଧି
ଅହା ବାନ୍ଧବ ରେ ! ।୨୩।

ଭୋଜନ ଆଦରୁ ଅଙ୍ଗ ଭୋଗ ସୁଖ ଯେତେ
ଭୁଜଙ୍ଗ ବିଷ ପରାୟେ ହୁଅଇ ପରତେ
ଅହା ବାନ୍ଧବ ରେ ! ।୨୪।

ମଳୟ ପବନ ମଳୟଜ ଶିରୀ ଆଦି
ମହା ପ୍ରୀତି କଥାମାନେ ହୁଅନ୍ତି ବିବାଦୀ
ଅହା ବାନ୍ଧବ ରେ ! ।୨୫।

ଜନମ ହୋଇ ମନରୁ ମରାଇ ମଦନ
ଯେ ଯାହା କଲେହେଁ କଷ୍ଟ ପରରେ ସମାନ
ଅହା ବାନ୍ଧବ ରେ ! ।୨୬।

ରଖିଲା ବିଧାତା ଆମ୍ଭ କପାଳେ ଏତକ
ରଥାଙ୍ଗ-ରଜନୀଦଶା ହେବ କାଳଯାକ
ଅହା ବାନ୍ଧବ ରେ ! ।୨୭।

ଲୀଳାବତୀ ମୋହଲାଗି ଛାଡିଲୁ ଲୀଳାକୁ
ଲୋଚନେ ଏକା ମଣ୍ଡିଲୁ ଲୋତକମାଳାକୁ
ଅହା ବାନ୍ଧବ ରେ ! ।୨୮।

ବେପଥୁ ସ୍ତମ୍ଭ ରୋମାଞ୍ଚ ବିସ୍ୱର ବିବର୍ଣ୍ଣ
ବେଗରେ ସ୍ୱେଦ-ପ୍ରଳୟ ହୋଇଲୁ ମଗ୍ନ
ଅହା ବାନ୍ଧବ ରେ ! ।୨୯।

ଶୀତ ଖରା ବରଷା ଏ ବାରମାସ ଯାକ
ଶ୍ରୀଅଙ୍ଗରେ କଷ୍ଟ ଭୋଗ ହୋଇଲା ଏତେକ
ଅହା ବାନ୍ଧବ ରେ ! ।୩୦।

ସହଜେ ହେ ଅଗ୍ରେ ନ ଥିଲେ ବନିତା ଲତା
ଶୀର୍ଣ୍ଣ ହୋଇ ହୁଅନ୍ତି ମଣି ଶଯ୍ୟନରତା
ଅହା ବାନ୍ଧବ ରେ ! ।୩୧।

ସବୁ ଦୋଷ ମୋର କ୍ଷମା କରିବୁ ମୃଗାକ୍ଷି
ଶ୍ରୀକର ଧରି ଚୋଟେ ମୁଁ ଏତେ କହୁଅଛି
ଅହା ବାନ୍ଧବ ରେ ! ।୩୨।

ହସ୍ତରେ ଏତେକ ଲେଖି ମୃଦ ମୁଦ ଦେଇ
ହସି ବୋଇଲେ ଉଦ୍ଧବ ଯିବ ବେଗ ହୋଇ
ଆହା ବାନ୍ଧବ ରେ ! ।୩୩।

କ୍ଷପାକରବଦନୀ ରାଧାକୁ ଏହା ଦେବ
କ୍ଷେମେ ଦୀନକୃଷ୍ଣ ବୋଲେ ମୋ ଦୁଃଖ କହିବ
ଆହା ବାନ୍ଧବ ରେ ! ।୩୪।



# ନବଘନ ଚଉତିଶା

---

ନବଘନ ଚଉତିଶା ଗୋପାଳକୃଷ୍ଣଙ୍କ ରଚିତ ବିରହ ଚଉତିଶା ମାନଙ୍କ ମଧ୍ୟରେ ଏକତମ। ଏଥିରେ ବର୍ଣ୍ଣିତ ଉପମାନ ଉପମେୟର ସମତାପୂର୍ଣ୍ଣ ବିନ୍ୟାସ ଏହାର ବିଶେଷତା। ଏ ଚଉତିଶାରେ ଭାବ, କୋମଳ ପଦାବଳୀଦ୍ୱାରା ଯେଉଁ ଅପୂର୍ବ ସଙ୍ଗୀତର ସୃଷ୍ଟି ହୋଇଅଛି ତାହା ସର୍ବଲୋକରେ ଗୋପାଳକୃଷ୍ଣଙ୍କ ଅସାମାନ୍ୟ ପ୍ରତିଭାର ନିଦର୍ଶନ।

ରାଗ କାମୋଦୀ ।

କୃଷ୍ଣ କଂସ ନଗରେ          ଜଳଦ ସମୟରେ
କଜ୍ଜଳ ମେଘ ବର୍ଣ୍ଣ ଦେଖି
କରନ୍ତି ଚିନ୍ତା ମନେ          କେମନ୍ତେ ମୋ ବନ୍ଧୁନେ
ବଞ୍ଚିବ କଳାକରମୁଖୀ ହେ
ନବଘନ !

କହନ୍ତି ନବଘନ ଶୁହିଁ
କିମ୍ପା ଅଛିଲ ମତେ ଦହ
କାମକେଳିକୁଶଳା          କଣ୍ଠ-ରତନ-ମାଳା
ଢୋଳାପ୍ରତିମା ମୋର ନାହିଁ ହେ
ନବଘନ ! । ୧ ।

ଖଞ୍ଜନ-ବଲ୍ଲୋଚନା ମଞ୍ଜୁ-ପିକ-ବଚନା
ଥାଆନ୍ତା ଯେବେ ମୋର କୋଳେ
ଘଣକାନ୍ତିବ ଘେନ ଘନରସରେ ଦାଣୀ
ହୋଇ ଅସନ୍ତୁ ଢେଢେବେଳେ ହେ
ନବଘନ !
ଖେଦ ମୋ ଉଦୟେ ନୁହନ୍ତା
ଖଣକ ସୁଖ କେ କହନ୍ତା
ଖରକାମ ବଇର ଶର ପ୍ରହାର କର
ଝର୍ପା ମୋ ଶରୀରେ ରହନ୍ତା ହେ
ନବଘନ ! । ୨ ।

ଗଜଗମନୀ ଗୋରୀ ମୋ ପଞ୍ଚପ୍ରାଣେଶ୍ୱରୀ
ପାଶରେ ନାହିଁ ମୋର ଯେଣୁ
ଗଜରାଜ ପରାୟେ ଦେଖି ତୁମ୍ଭଙ୍କୁ ଭୟେ
ଜାଡ ହେଉଛି ମୋର ତେଣୁ ହେ
ନବଘନ !
ଗର୍ଜ୍ଜନ ବୃଂହିତ ସମାନ
ଗଳୁଛି ଜଳଧାର ଦାନ
ଗୁଣୁଅଛି ମନରେ ବକପନ୍ତି ଛଳରେ
ପ୍ରକାଶ ହୋଇଛି ଦଶନ ହେ
ନବଘନ ! । ୩ ।

ଘେନମାକୁ ଜୀବନ ଅଇଲ ଘନାଘନ
କାଳ ସ୍ୱରୂପ ଧରି କରି

ଘନବହ୍ନୀ ରସନା କରୁଛ ଯେବେ ଅନା
ଏବେକେବେହେଁ ଗଲି ମୁଁ ସରି ହେ ।
ନବଘନ !
ଘଡ଼ଘଡ଼ି ଗର୍ଜ୍ଜନ ଛାଡ଼ି
ଘୋଟି ପଡ଼ୁଛ ମତେ ମାଡ଼ି
ଘେନୁଅଛ ମୋ ପ୍ରାଣ ପାପିଷ୍ଠ ପଞ୍ଚବାଣ
ଭ୍ରମର ସଙ୍ଗତରେ ପଡ଼ି ହେ
ନବଘନ ! । ୪ ।

ନାଗ ନାଗ ସରିଏ ମନେ ତ ପ୍ରତେ ହୁଏ
ବିଷ ବିଷ ଛାଡ଼ୁଛ ଯେଣୁ
ନିରନ୍ତରେ ବିଜୁଳି— ଛଳେ ରସନା ଶୂଳ
ଭସ୍ମ କରାଉଅଛ ତେଣୁ ହେ
ନବଘନ !
ନାଶିବ ମୋ ପ୍ରାଣ ସମୀର
ଦଣ୍ଡିଏ ହୋଇଛି ଭ୍ରମର
ଦଣ୍ଡେ ଭ୍ରମଙ୍କୁ ପାଇ ମହା ପ୍ରବଳ ହୋଇ
ଅଛ କାମ ଜାଙ୍ଗଳକର ହେ
ନବଘନ ! । ୫ ।

ଦେଖିଲି ଏବେ ରାହୁ ପରାଏ ଗ୍ରହୁଁ ଗ୍ରହୁଁ
ପୂର୍ଣ୍ଣଚନ୍ଦ୍ରଙ୍କୁ ଗିଳିଦେଲା,
ଚନ୍ଦ୍ରା ଜଳରେ ସ୍ନାନ କରାଇ ପ୍ରାଣଦାନ
କାମ-ବ୍ରହ୍ମେ ଦେବାଙ୍କୁ ବଳ ହେ
ନବଘନ !

ଚିତ୍ତ ଭ୍ରମର କି କୁଟିଳ,
ଚନ୍ଦ୍ର ତ ନାହିଁ ମିଶିଗଲ,
ଚଢ଼ିକି ଘାଟେ ଗିରି—   ବରକୁ ବୃଷ୍ଟିକରି
ଦେଖି ଦେଖି ମସ୍ତକ ଗଲି ହେ
ନବଘନ ! । ୬ ।

ଷମା କରୁଣା ନାହିଁ   ଯମ ସ୍ୱରୂପ ବହି
ଜୀବନ ଘେନିବାର ମୂଳ
ଗ୍ରହ ପ୍ରାଣବନ୍ଧୁକୁ   କହୁଅଛି ତୁମ୍ଭଙ୍କୁ
ଏତେକେ ନ ପାଅ ବିକଳ ହେ
ନବଘନ !

କ୍ଷଣକେ କର ଯେଉଁ ଘୋଷ,
ଛଡ଼ାଅ ପ୍ରାଣ ପ୍ରତିଆଶ,
ଛଇଲ ଶିରୋମଣି   ଏହା କର୍ଣ୍ଣରେ ଶୁଣି
କେମନ୍ତେ ନୋହିବ ବିନାଶ ? ହେ
ନବଘନ ! । ୭ ।

ଯେବେ ତୁମ୍ଭ ତୁଲରେ   ଥାଉ ଏକମେଳରେ,
ହୋଉ ତୁମ୍ଭ ସମସ୍ତ ପ୍ରାପ୍ତେ,
ଜୀମୂତ ମତେ କରି   ବିଜୁଳି ହୋଇ ଗୋରୀ
ବରଷେ ଘନ ରସମସ୍ତେ ହେ
ନବଘନ !

ଯାବତ ତାପ ହୋଏ ଲୋପ,
ଜାତ ହୋଏ ପୁଲକ ଜାପ,

ଯହିଁ ରୂପେ ବଢ଼ଇ ପରମ ପ୍ରେମ ନଈ
କହି ନୁହଇ ସେ ଅମାପ ହେ
ନବଘନ ! ।୮।

ଝୀନ-ବସନା ଶ୍ୱାସ ଗନ୍ଧବହ ସଦୃଶ
ପ୍ରଖରେ ବହଇ ସେକାଳେ,
ଝଷକେତନ ତଠ— ତରୁ ହୋଇ ଉତ୍ସାଠ
କାହିଁ ଭାସଇ ଅବହେଳେ ହେ
ନବଘନ !

ଝିଙ୍କାରି ଶବଦକୁ ଜିଣି
ଝଲ ଗୋଷ୍ଠି ମନ୍ଥବାଣୀ
ଝମଣେ ନ ରହଇ ଦାର୍ଢ୍ୟ ପ୍ରାପ୍ତେ ହୋଇ,
ଡାକଇ କନକ କିଙ୍କିଣୀ ହେ
ନବଘନ ! ।୯।

ନ ଜାଣଇ ବରଷା ମତେ କର ଭରସା
ମୁଁ ତାହା ଘେନ ସେହିମତ
ନଶା ସମସ୍ତ ଚକ୍ର— ଦଶା ହେବାରୁ ଶଙ୍କ-
ବାହନ ହୋଇଲ ବିପତ୍ତି ହେ
ନବଘନ !

ନାହିଁ ତୁମ୍ଭର କିଛି ଦୋଷ,
ନାହିଁ ମୋ କର୍ମେ ଭଲ ଲେଶ,
ନିଶାକର ଚନ୍ଦ୍ରମା ଚନ୍ଦନ ସୁଖ ସୀମା
ହେଲେ ବିରହେ ହୋଏ ବିଷ ହେ
ନବଘନ ! ।୧୦।

ଟେକ ଯଣ୍ଟତ୍ କାଳେ 	ଯେଉଁ ଲୋକ ବଳଲେ
ଯେନଇ ଲୋକର ବେଦନା
ଟେକିଧର ଆଦରୁ 	ବ୍ରହ୍ମାଣ୍ଡକର୍ତ୍ତାଠାରୁ
ବଡ଼ ତାହାକୁ ବୋଲି ହିନା ହେ
ନବଘନ !

ଟଳ ତ ଯିବ ତୁମ୍ଭ ପଣ
ଟିକାଏ ଯେଜ ମୋ କଷଣ
ଟେକ ଗର୍ଜନ କର 	ପ୍ରାଣ ମୋର ନ ହର
ନୂହ ଅଭିଶପ୍ତ ଦାରୁଣ ହେ,
ନବଘନ ! । ୧୧ ।

ଠାଠିକ ତୁମ୍ଭେ ତୋର 	ହଣ ମୋହୋର ପରି
ସହଜେ ଶ୍ୟାମ କଳେବର
ଠିକ କେକୀକଳାପ 	ପରିଯେ ଇନ୍ଦ୍ରଚାପ
ସମ ବଜୂଳ ପୀତାମ୍ବର ହେ
ନବଘନ !
ଠିକ ଗୁଣ ତୁମ୍ଭର ଯେତେ
ଠାବ ସେ ହୋଇଛୁ ଜଗତେ
ଠାକୁରାଣୀ ଯମୁନୁ 	ତୁମ୍ଭଙ୍କୁ ପେଷିବାକୁ
ବିଶ୍ୱାସ ହୋଉଅଛୁ ଚତ୍ତେ ହେ ।
ନବଘନ ! । ୧୧ ।

ଡୋଲା-ପ୍ରତିମା ଏକା 	ହେଲେ କରଇ ଦକା
ଦେଖି ତୁମ୍ଭଙ୍କୁ ନୟନରେ

ଢୋଲାରେ ଦେଖି ଦେଖି ବନ୍ଧୁ ମୋ ରଖି ରଖି
ଛାଡ଼ି ଅଇଲ ନିର୍ଦ୍ଦୟୀରେ ହେ
ନବଘନ !

ଢକା ଉପରେ ହେଲା ଢକା
ଢକାଇଛ କାମ କଡ଼କା
ଢରେ ପ୍ରାଣ ଛାଡ଼ିବ କର୍ଣ୍ଣେ ଯେବେ ଶୁଣିବ
ଢାହୁକ ଡାକ କେକୀ କା କା ହେ
ନବଘନ ! । ୧୩ ।

ଣାଳେ ଭସିଲୁ ଦୁହେଁ କାମନଦୀ-ପ୍ରବାହେ
ଦୁହେଁ ଦୁହିଁଙ୍କ ପିନା ଭେଳା,
ଣଲି ଜୀବନ ଯିବା ଏଥିରେ କେତେ ଅବା
ଯହିଁ ଦଇବ ଏତେ ହେଲା ହେ
ନବଘନ !

ଣାଳେ ମୋ ବୋଲ ଏବେ କର
ଣମ ପଣକୁ ପରିହର
ଣାଳନେତ୍ରୀ ଛାମୁରେ ବାରତା କହିବାରେ
ବନ୍ଧୁତ ଯଶକୁ ବିସ୍ତାର ହେ
ନବଘନ ! । ୧୪ ।

ଏବେ ଯେ ଭୂମି ରିତୁ ପ୍ରାପ୍ତେ ମକରକେତୁ
ହେଉଛୁ ହୋଇଥିବା ବାଳା
ଉଚ୍ଚ କୁଚ ଗିରିରେ ପୟୋଧର ରୂପରେ
ପଡ଼ିଥିବ ଚକ୍ଷୁର-ମାଳା ହେ
ନବଘନ !

ଅଶ୍ରୁଜଳ ବରଷୁଥିବ
ଅନଙ୍ଗ-କୃଷିକ ଜୀଇବ
ଅଙ୍ଗ ଭୂମିରେ ଶର— ସୀରଟରେ ଦେଇ ଗାର
ଅନେକ କୃଷି ସେ କରିବ ହେ
ନବଘନ ! ।୧୫।

ଚାପ-ଚଟନା ବଢ଼ି ଧଇର୍ଯ୍ୟ-ତଟ ଏଡ଼ି
ବିବେକ-ବିଟପୀ ପାଡ଼ିବ
ଚଞ୍ଚଳ ହୋଇ ଜ୍ଞାନ- ହଂସ ଉଡ଼ି ବହନ
ହୃଦୟ-ସରସୀ ଛାଡ଼ିବ ହେ
ନବଘନ !

ତୃଷ୍ଣି ହେବ ବଚନ-ପିକ
ତୋଷ ହେବ କାନ୍ତ-କେତକ
ତାଣ୍ଡବ କରୁଥିବ ବିରହ-ବ୍ୟାଘ୍ର-ଶିବ—
ଭୂଷଣ-ବଇର ଅନେକ ହେ
ନବଘନ ! ।୧୬।

ଥରେ ଥରେ ପ୍ରଖର ବହେ ଶ୍ୱାସ-ସମୀର
ଥରେ ଥରେ ହୁଅଇ ଲୀନ
ଥିଲା କର୍ମରେ ଏହା ଏ କାଳେ ଯାଉଁ ଯାହା
ନୋହିଲା ଧିକ ତା ଜୀବନ ହେ
ନବଘନ !

ଥିରମଣ୍ତନୀ ହୀରଦନ୍ତୀ
ଥୂଳ-ନିତମ୍ବା ଦନ୍ତୀ-ଗତି

ଥାପିଲ୍ଲି ସୁଖ ପାଇ ପ୍ରେମ ପ୍ରୀତି ମୋ ଠାଇଁ
ପାଇଲ୍ଲି ଅନେକ ବିପତ୍ତି ହେ
ନବଘନ ! । ୧୭ ।

ଦୟାଳୁ-ଶିରୋମଣି ଦୟାରେ ମୋତେ କଣି
ଦେଇଛୁ ଯେତେ ଯେତେ ସୁଖ
ଦରଦ୍ରାସିନୀ ହେବୁ ବସନ୍ତ ଆଦ ଋତୁ—
ଯାକ ମୁଁ ପାଇ ନାହିଁ ଦୁଖ ହେ
ନବଘନ !

ଦଇବ ଏବେ ଏହା କଲ୍ଲ
ଦାସବତ୍ସଲା ଦୂର ହେଲ୍ଲ
ଦଗଧ ପଟ ପ୍ରାୟେ ହୋଇ କେବଳ କାୟେ
ଆକାର ମାତ୍ରକ ରହିଲ୍ଲ ହେ
ନବଘନ ! । ୧୮ ।

ଧୃତ ଧ୍ୱସିଂନୀ ହେମ— କାଃଲେ ଅରୁଣ ଧୂମ
ପୁରେ ଯେ ଧେନ ବସି ଥାଇ
ଧାତା ରଚନା ଯେତେ ସୁଖ ସମସ୍ତ ମତେ
ଇତର ପରାୟେ ଦଶଇ ହେ
ନବଘନ !

ଧନ୍ୟ ତା କୋମଳ ଶରୀର
ଧୀରେ ଲଗନ୍ତେ ଅଙ୍ଗେ ମୋର
ଧିକ୍କାର କରୁଥାଇ ହଂସୁଳ ଭୁଲୀପାଇଁ
ଅଙ୍ଗକୁ ଲକ୍ଷ୍ୟ ଦ୍ୟନ୍ତ ନବ ହେ
ନବଘନ ! । ୧୯ ।

ନାହିଁ ନୋହିବ ନବ    ପଞ୍ଚ ଭୁବନେ ଭବ-
ବତୀ ସମାନେ ସୁଖକାନ୍ତି
ନୋହିଲେ କାହିପାଇଁ    ଝୁରୁଛି ତାହାପାଇଁ
ନିଶି ଦିବସ ବସି କରି ହେ
ନବଘନ !

ନିରୁପମ ନାଗରୀମଣି
ନାହିଁ ତା ପରି ଗୁଣମଣି
ନାକ ନାଗ ତରୁଣୀ    ତାହାର କଥା ଶୁଣି
ନୟନେ ନ ଦେଖନ୍ତି ଧରଣୀ ହେ
ନବଘନ ! । ୨୦ ।

ପୂର୍ଣ୍ଣ-ଚନ୍ଦ୍ର-ବଦନା    ମତ୍ତ-ପିକ-ବଚନା
ପଲ୍ଲବ-ଦଶନ-ବସନା
ପୁଷ୍ପ ବେଶ ହୋଇ ଯେ    ଅସେ ମକରଧ୍ୱଜେ
ପୀଡ଼ିତ ହୋଇ ପୀନସ୍ତନା ହେ
ନବଘନ !

ପଛ ହୋଏ ପଲକପନ୍ତି
ପୁଲକେ ଫୁଲଇ ମୋ ଛାତି
ପୀତବସନା ସଙ୍ଗେ    ରତି-ପତି ପ୍ରସଙ୍ଗେ
କାହିଁ ଯାଇ ବସନ୍ତରାତି ହେ
ନବଘନ ! । ୨୧ ।

ଫାଟି ନ ଯାଇ ଛାତି    ରହିଛି ତାହା ଚେତି
ଫୁଟେ ଜାଣିଲି ବଜ୍ର ଏହି

ଫୁଲ୍ଲାରବିନ୍ଦମୁଖୀ ମୁଖ ଯାହା ନ ଦେଖି
ତରଳି ନ ଯାଉଛି ବହି ହେ
ନବଘନ !

ଫାନ୍ଦେ ପଡ଼ିଲା ମୃଗ ପ୍ରାୟେ
ଫାଇ ବିକଳ ହୋଏ କାୟେ
ଫନ୍ଦା ହିଁ ଅଛି ଏତେ ବହି ବା କଦାଚତେ
ନଥିଲି ପ୍ରାଣ ବନ୍ଧୁ ଯାଏ ହେ
ନବଘନ ! । ୨୨ ।

ବଡ଼ କର ଅଙ୍ଗରେ ଘେନୁ ଯେ ଥାନ୍ତି ନରେ
ଗ୍ରୀଷମେ କର୍ପୂର ଚନ୍ଦନ
ବିଶାଳନେତ୍ରୀ ପର— ସାଦେ ତହିଁକ ମୋର
ଲେଶେହେଁ ନ ବଳଇ ମନ ହେ
ନବଘନ !

ବୁଡ଼ିଲା ସବୁ ସୁଖ ମୋର
ବିଧାତା କଲା ଅବିଚାର
ବସନ୍ତ-ଗ୍ରୀଷମ ସମସ୍ତ ଋତୁ ସମ
ସମାନ ବଛର ମୋହର ହେ
ନବଘନ ! । ୨୩ ।

ଭୋଜନ ବିନୁ ଭୋଗୀ ମନେ ଯେମନ୍ତ ସୁଖୀ
ନୁହଇ ଭୂଷଣ ଭୂଷଣେ
ଭାବିନୀ ବିନୁଁ ଭାବ ସେହିମତ ଅଭାବ
ହୁଅଇ ଦନବ କଷଣେ ହେ
ନବଘନ !

ଭୂପତି ବର୍ଣ୍ଣନେ ସମର୍ଥ
ଭଗାଣ୍ଣି ପର୍ବେ ଦଶନ୍ତ
ଭୁରୁଶୋଭନୀ ଭାବ— ବର୍ଣ୍ଣି ବର୍ଣ୍ଣିନେ ଜୀବ
ଥିବା କଥାହି ସେହି ମତ ହେ
ନବଘନ ! । ୧୪ ।

ମନ୍ଦ ମନ୍ଦ କହିବା ମନ୍ଦ ମନ୍ଦ ଗ୍ରହିଁବା
ମନ୍ଦ କଳ କୋକିଳ-ବାଣୀ
ମତେ ତ ଦିଶୁ ନାହିଁ ଉପମା ଅଛି କାହିଁ
ଅଦ୍ୱା ସେ ରସିକ-ସିଦ୍ଧାଣୀ ହେ
ନବଘନ !

ମକରଧ୍ୱଜ କଳ୍ପଲତା
ମହତ କାମ-ଫଳ-ଦାତା
ମଣ୍ଡି ମଣ୍ଡ୍ରଣୀ ମନ— ମୋହିନୀ ଜୀବଧନ
ମୋ ସୁଖ-ମନ୍ଦିର-ଦେବତା ହେ
ନବଘନ ! । ୧୫ ।

ଜମ୍ବୁନଦ-ଗୋରାଙ୍କ ନବୀନ କିଶୋରୀଙ୍କ
ଦେଖିବା ଯାଏଁ ତ୍ରପତେ ନାହିଁ
ଜପୁଥିବ ତାହାର ନାମ ତା ନିରନ୍ତର
ଯାବତ ଯାତନାକୁ ସହି ହେ
ନବଘନ !

ଜଳଜନେତ୍ରୀ କି କହିବ
ଯେମନ୍ତେ ଜୀବନ ରହିବ

ଜୀବନ-ମୁଖ୍ୟ ନାମ    ଯଥାର୍ଥ କର ବାମ-
ନେତ୍ରୀଙ୍କ ବାମ ତା ନୋହିବ ଯେ
ନବଘନ ! । ୨୬ ।

ରଖଇ ନାହିଁ ଯାହା    ସବୁକାଳେ ସମ୍ପଦା
ଭଙ୍ଗହିଁ କରଇ ତହିଁରେ
ଚଢ଼ଏ ଯେ ଯାହାକୁ    ଛାଡ଼ଇ ନାହିଁ ତାକୁ
ରଖଇ ଅନେକ ଦୂରରେ ହେ
ନବଘେନ !

ରାଜୀବ ସୁନ୍ଦର ଏ ସ୍ୱାନ୍ତ
ରକ୍ତ ପତ୍ର ଏ ଅମାନ୍ତ
ରୋଲମ୍ବ ଗୁଣ ନେଇ    ଫୁଲ ଧନୁରେ ଦେଇ
ଫୁଲ କାଣ୍ଡେ ମନ୍ଥଇ ମନ ହେ
ନବଘନ ! । ୨୭ ।

ଲୋଚନ କଣ୍ଠି ଧର    ଲୋଚନେ ଅଙ୍ଗ ତାର
ନିର୍ଲଜ୍ଜ ଅବଲୋକେ ଏତେ
ଲୋକ ଦୁଃଖ ନ ଜାଣି    ବନ୍ଧଇ ପୁଣ ପୁଣି
ବାଳକ ଅବିବେକ ଚିତ୍ତେ ହେ
ନବଘନ !

ଲେଶେ ବିଚାର ନ ଚଳଇ
ଲଳନା ଅଙ୍ଗେ ପ୍ରହାରଇ
ଲୋଭ ହାନି ବିଶେଷ    ନ ଜାଣି ଆଶପାଶ
ପର ଏ ଆପଣେ ମାରଇ ହେ
ନବଘନ ! । ୨୮

ବଗିରୁ ଅଛୁ ଏବେ ତୁମ୍ଭ ସଙ୍ଗତେ ଯେବେ
ଯିବ ଏ ବଳଶ୍ରୀ ପାଶକୁ
ବଧୂ-ବଦନୀ ବାଳା କୋମଳା ପ୍ରେମଶୀଳା
ଅବଶ୍ୟ ଭଜିବ ନାଶକୁ ହେ
ନବଘନ !

ବିଷଧର ପାଇଲେ ପୟ
ବୃଦ୍ଧି ଯେ କରଇ ବିଷୟ
ବଣିକେରୁ ଆଶ୍ରୟ ପାଇଲେ କରେ ଜୟ
ଏହୁ ଯେନ କରୁଛୁ ଭୟ ହେ
ନବଘନ ! । ୨୯ ।

ସହ୍ଜନେହେଁ ଶୀତଳ କର୍ପୂର ନାରକେଳ
ଲେମ୍ବୁ ସଂଯୋଗୁ ହୋଏ ବିଷ
ସ୍ବଜନ ସଙ୍ଗେ ଯେବେ ଦୁର୍ଜନ ହୋଏ ତେବେ
ଅବଶ୍ୟ ହୋଏ ଅପଯଶ ହେ
ନବଘନ !

ସଉଦାମିନୀ ସଙ୍ଗେ ଥିବ
ସନ୍ଦକେ ତ ସମୀର ଯିବ
ଝିଙ୍ଗୀ ବକ ଡାହୁକ ମଣ୍ଡୂକ ମହା ଡାକ
କାହାକୁ କେତେ ନବାରବ ହେ
ନବଘନ ! । ୩୦ ।

ସେ ତ ତୁମ୍ଭ ଦମକ ଶୁଣି ଲଭେ ଚମକ
ଝଷକେରୁ ଦମକ ତେଣେ

ଚିତ୍ତ କଣ୍ଠ ବିକଟ ଡାକବାର ଚହଟ
ବନ୍ଧୁଙ୍କୁ ନ ରକ୍ଷିବ ପ୍ରାଣେ ହେ
ନବଘନ !

ସବୁ ସମ୍ପଦ ସରଯିବ
ସଂସାରେ ଲୋକ କ ବୋଲିବ
ଶୁଭେ ଜୀବନ ଥିଲେ ଧାତା ସମ୍ମୁଖ ହେଲେ
ସମସ୍ତ ସୁଖହିଁ ହୋଇବ ହେ
ନବଘନ ! । ୩୧ ।

ସଲିଳଧର ଯାଅ ଅପଯଶ ନ ପାଅ
ସବୁ ଦୁଷ୍ଟ ମାନଙ୍କୁ ଘେନ
ସମସ୍ତେ ଉପକାର କଲେ ଯେଣୁ ମୋହର
ଜୀବଧନ ନ କଲ ଦାନ ହେ
ନବଘନ !

ସକ୍ରୋଧେ ବୋଲିବି ମୁଁ ଯାହା
ମନରେ ନ ଘେନିମ ତାହା
ସ୍ନେହ ଥାଇ ଯହିଁରେ ମାନ କର ତହିଁରେ
ହୃଦରେ ବିଚାରିବ ଏହା ହେ
ନବଘନ ! । ୩୨ ।

ହଂସ-ଗମନୀ ଧନୀ ବିଚ୍ଛେଦ-ଦୁଃଖ ଘେନି
ମୋ ମନ ମୋହର ନୁହଇ
ହୃଦୟ ନୋହେ ଥୟେ କଥା ପ୍ରସଙ୍ଗ ପ୍ରାଏ
କେତେବେଳରେ କି କହଇ ହେ
ନବଘନ !

ହର-ବଇର ଶରେ କ୍ଷୀଣ
ହେଉଛୁ ଥରେ ଥରେ ଅନ
ହରଷ ହୋଇ ଘନ          କର ଏବେ ଗମନ
ନ ଘେନ କଛୁ ଅଭିମାନ ହେ
ନବଘନ ! । ୩୩ ।

କ୍ଷମା ସାଗର ବର          ରସିକ ଗିରିଧର
ବୋଲେ ଜଳଦ ବାହୁଡ଼ିଲ
କ୍ଷପାକରବଦନୀ          କ୍ଷୋଭ କରିଲା ଘେନ
ଗୋକୁଳମାର୍ଗ ନ ମାଡ଼ିଲ ହେ
ନବଘନ !

କ୍ଷମେ ଏ ଚଉତିଶା ଶୁଣ
ଛାଡ଼ ମନରୁ ଅବଗୁଣ
କ୍ଷମା ସାଗର ଲୋକ—          ମାଥା ଚରଣେ ଲୋକ
ଦୀନକୃଷ୍ଣ ଦାସ ଶରଣ ହେ
ନବଘନ ! । ୩୪ ।




କଟକ ପ୍ରାଚୀ ପ୍ରେସରେ ଶ୍ରୀ ଦଛୁଦ ଚରଣ ପଟ୍ଟନାୟକ ବି, ଏ, ଙ୍କ ଦ୍ୱାରା ମୁଦ୍ରିତ ।

# ଚଉତିଶା ଚନ୍ଦ୍ରିକା

## ରାଧାଦର୍ଶନ ଚଉତିଶା

୩ । ଗଙ୍ଗାଧରରିପୁମହାନନ୍ଦା—ମହାଦେବଙ୍କ ଶତ୍ରୁ କାମ । କାମରୂପ ମହାନନ୍ଦା । ହେମ ତରଣୀ—ସୁନାର ନୌକା । ଅନ୍ତାଳ—ପାଳ ।

୪ । ମହାମତ୍ତକଳ ମରାଳ ଡାକ—ମତ୍ତ ହଂସମାନଙ୍କର କଳ କଳ ଧ୍ୱନି । ଡମ୍ବର—ଆଡ଼ମ୍ବର । ଅର୍ଥାତ୍ ସେହି ରମଣୀର ପାଦ ଅଳଙ୍କାରର ଧ୍ୱନି ମତ୍ତ ହଂସମାନଙ୍କ କଳ ରବକୁ ସୁଦ୍ଧା ହଟାଇ ଦେଉଅଛି ।

୫ । ନୀଳକଣ୍ଠ—ମହାଦେବ ।

୬ । ଚନ୍ଦ୍ରାର୍ଦ୍ଧଭାଲ—ଅର୍ଦ୍ଧଚନ୍ଦ୍ର ରୂପ କପାଳ । ଗନ୍ଧଉର୍ଦ୍ଧ୍ୱତିଳକ—ସୁବାସ ଚନ୍ଦନର କଳୀ ।

୭ । ଛଟେଣ—ଷଣେ ('ଷ' ସ୍ଥାନରେ 'ଛ' ଓ 'ଛ' ସ୍ଥାନରେ 'ଷ' ର ବ୍ୟବହାର ଅନେକ ଚଉତିଶାରେ ଦେଖାଯାଏ) ଛତବିତ—ବ୍ୟସ୍ତବ୍ୟସ୍ତ । ରତିପତି ଶରେ—ମଦନ ଶରରେ । କର୍ମରେ ହେବେ ବିବାଦୀ—କର୍ମ ଅର୍ଥାତ୍ ନିଜ ଭାଗ୍ୟ ସଙ୍ଗେ କଳହ କରିବେ ବା ସେହି ରମଣୀ ସଙ୍ଗେ କ୍ରୀଡ଼ା କରିବାକୁ ପରସ୍ପର ମଧ୍ୟରେ ବିବାଦ କରିବେ ।

୮ । ଜମ୍ବନବ କଳେବର—ସୁନାବର୍ଣ୍ଣ ଦେହ ।

୯ । ବାନ୍ଧକ---ଜାବର କାପ, ଫୁଲଶର—ମଦନ ।

୧୦ । ନବପଞ୍ଚ ଭୁବନ—ଚଉର୍ଦ୍ଦଶ ଲୋକ । କାମ ଜୟରଥ--କନ୍ଦର୍ପର ବିଜୟରଥ କପଟ ସ୍ତ୍ରୀ ରୂପରେ ଜାତ ହୋଇଅଛି ।

୧୧ । ଟେକ—ଉଚ୍ଚ, ଟିକାଏ-----------------
ତାହାର ଉଚ୍ଚ କୁଚ ଯୁଗଳ ଚକ୍ରବାଡ଼ ପର୍ବତ ପରି ଟେକି ହୋଇ ତାର ଆଖିରୂପ ସୂର୍ଯ୍ୟକୁ ବୁଇଁ ଦେଖାଇ ଦେଉନାହିଁ । ଅର୍ଥାତ୍ ସ୍ତନଯୁଗଳ ଟେକି ହୋଇଥିବାରୁ ତାର ଆଖି ତଳେ ପଡ଼ୁନାହିଁ; ସ୍ତନରେ ପଡ଼ୁଛି ।

୧୨ । ଠଣେ ପଦ୍ମକୋଳେ---ମୁଖରୂପ ପଦ୍ମରେ ଚକ୍ଷୁରୂପ ଖଞ୍ଜନ ପକ୍ଷୀଦ୍ୱୟ ଖେଳିବାର ଦେଖିଲି ।

୧୩ । ଡମରୁମଧ୍ୟା ଶୋଭନୀ—କ୍ଷୀଣକଟି । ଡମ୍ବର—ଆଡ଼ମ୍ବର । ତାଳିମ୍ବନେତ —ତାଳମ୍ବ ବର୍ଣ୍ଣ ପାଟ ।

୧୪ । ତମ—ଅନ୍ତରଞ୍ଜନ କର । ତାଳ ଗୃହାଣୀ—ବାଙ୍କ ଗୃହଣୀରେ ଶୃଙ୍ଗାର ଭାବକୁ ଜଗାଇ ମନକୁ ଓଁଟାଇ ନେଇଗଲା ।

୧୫ । ତାହାର ରଙ୍ଗ ଅଧର ଶୃଙ୍ଗାର ରସ ରୂପ ଅମୃତର ଘର ଏବଂ ତହିଁରେ ହସ ଫୁଟି ବାଳସୂର୍ଯ୍ୟଙ୍କ କୋଳରେ ଚନ୍ଦ୍ରରେଖା ରହିଲେ ଯେପରି ମନୋରମ ଦିଶେ ସେହିପରି ମନୋରମ ଦିଶୁଥିଲା ।

୧୬ । ତନଲୋକ ସୁଖ ସୀମା—ତିନଲୋକରେ ସମ୍ଭବ ସୁଖର ଚୂଡ଼ାନ୍ତ । ତାହାକୁ ସେହି ଉପମା—ଅର୍ଥାତ୍ ତା ସଙ୍ଗେ ଉପମିତ ହେବାକୁ ଆଉ କେହି ନାହିଁ । କାମ ଅର୍ଥାତ୍ କନ୍ଦର୍ପର ତାହାର ଯୋଗୁଁ ଏତେ ଭାରମା ବା ଗର୍ବ ।

୧୭ । ପାଦକ ପରେ ପାଦେ ପକାଇ ସେ ଯେଉଁ ରୂପେ ଅଗ୍ରସର ହୁଏ ତାହା ବା କିଏ ବର୍ଣ୍ଣନା କରିବ ? ଥଳ ପଦ୍ମଗୁଡ଼ିଏ ତୋଳି ବିଞ୍ଚିଦେଲେ ଯେପରି ଦିଶିବ ତାର ପାଦପକା ଅବିକଳ ତଦ୍ରୂପ ।

୧୮ । ଦେହ ଅଦେହ ଦେହ କରିଗଲା——ଅନାଇବା ମାତ୍ରକେ ଦେହକୁ ଅଦେହ ଦେହ ଅର୍ଥାତ୍ କାମ ବିକାର ଯୁକ୍ତ ଦେହ କରିଦେଲା ।

୧୯ । କନ୍ଦର୍ପ ଧନୁଶର ଧରି ଚଳିଲା ପରି ଅର୍ଥାତ୍ ତର୍ଜନ କଲାପରି ତାହାର ଭ୍ରୂଭଙ୍ଗୀ ଓ ନେତ୍ର ଚାଞ୍ଚଲ୍ୟ ମୋତେ ବୋଧ ହେଲା ।

୨୦ । ତାର ଏ ସବୁ ଶୋଭା ମୋ ଚକ୍ଷୁରେ ବାସକରି ମୋତେ ବହୁ ସୁଖ ଦେଲା ଓ ବହୁ ବିଦ୍ୟାଥିଲେ ତା ଯେପରି ଅଙ୍ଗକୁ ଭାର ହୁଏ ନାହିଁ ସେହିପରି ଏହାସବୁ ଜଲେ ସୁଦ୍ଧା ଭାରୀ ବୋଧ ହେଲେ ନାହିଁ ।

୨୧ । ପରମାନନ୍ଦ ସମ୍ପତ୍ତି——ଶ୍ରେଷ୍ଠ ବ୍ରହ୍ମାନନ୍ଦ ସଂପଦ

୨୨ । ଫୁଟି——ଫୁଟିଥିବା, ତିଳଫୁଲ——ରାଶିଫୁଲ, ପେଡ଼ି——ପିଠାଳି । ସୁରଗୁରୁ——ଦେବତାଙ୍କ ଗୁରୁ ବୃହସ୍ପତି, ସୁରଗୁରୁଦଶା ପଞ୍ଚମ ବୃହସ୍ପତି ଦଶା——

୨୩ । ବିଷମଶର——ମଦନଶର

୨୪ । ଭବରିପୁତନୟ——କନ୍ଦର୍ପ ଭୟ

୨୫ । ଯାଉଥିଲା କଥାରଙ୍ଗେ——କୌତୁକରେ କଥାବାର୍ତ୍ତା କରି ଯାଉଥିଲା । ଜାତି ପଦ୍ମିନୀ——ସେ ପଦ୍ମିନୀ ଜାତୀୟା ସ୍ତ୍ରୀ ଥିବାରୁ ଭ୍ରମରମାନେ ତାର ଅଙ୍ଗ ସୁବାସ ଆଘ୍ରାଣ ପାଇ ଗୃହପାଖେ ବେଢିଥିଲେ ।

୨୭ । ସୁଶ୍ରୋଣୀ—ଉତ୍ତମ ନିତମ୍ବା, ରଣରଣ—ମଦନ, ରଣ-ରଥ—ଯୁଦ୍ଧଯାନ ।

୨୮ । ଲଳିତ ଅଳକାବଳି—ମସୃଣ ଚିକ୍କଣ କୁନ୍ତଳ ନିଚୟ ।

୩୦ । ସର୍ବାଙ୍ଗ ଅଳଙ୍କାର—ଯେ ରମଣୀ ଅଳଙ୍କାରକୁ ସର୍ବଦା ଅଳଂକୃତ କରିଅଛି ।

୩୧ । ଶଶୀଶେଖର—ମହାଦେବ ।

୩୪ । ଷେମେ—ଶୁଭରେ । ଛାୟାପତିସୁତା—ସୂର୍ଯ୍ୟତନୟା ଯମୁନା ।

---

## ଅମୃତନିଧି ଚଉତିଶା

୧ । କାଳିନ୍ଦୀ—ଯମୁନା, ପ୍ରଫୁଲ୍ଲ—ଫୁଟିଥିବା । କେ ବୋଲିତ—ତୋର ମୁଖକୁ କିଏ ଫୁଲ୍ଲ ପଦ୍ମ, କନକ ଓ ଦର୍ପଣ ସହିତ ତୁଳନା କରୁଛି ? ତାର କଣ ଜନ୍ମ କାଳରୁ ଆଖି ନାହିଁକି ? ସେ କଣ ତୋର ସୁହାଣୀ ଛଟା ଦେଖିନାହିଁକି ? ତାର ଏ ତୁଳନା କଥା ଶୁଣି ମୁଁ ଅତ୍ୟନ୍ତ ମର୍ମାହତ ହୁଏ ।

୨ । ଖଳ ଲୋକ—ମନ୍ଦ ପ୍ରକୃତିର ଲୋକ । ଖଳବୋଲ—ଖରାପ ବଚନ । ଖଞ୍ଜନ୍ତି—ଉପମା ଦିଅନ୍ତି । ପଶ୍ୟ ସମ୍ପ୍ରତି—ଦେଖ । ଖେଦ—ମନୋଦୁଃଖ ।

୩ । ଗୁଣିଲେ—ଚିନ୍ତା କଲେ, ତାହାଙ୍କ—ପଦ୍ମ ସୁବର୍ଣ୍ଣ ଓ ଚନ୍ଦ୍ର ଏମାନଙ୍କର ଅବଗୁଣ—ଦୁର୍ଗୁଣ ବର୍ଣ୍ଣନ କଲେ । ଗଗନ ନକ୍ଷତ୍ର ପନ୍ତି—ଆକାଶର ତାରା ପନ୍ତି ଅଗଣିତ ।

ହେଲା ବାଧି—ନାଶ କଲା ।

୪ । ଘର୍ମକର—କର=ସୂର୍ଯ୍ୟଙ୍କ କିରଣ, ଘର୍ମେ—ଦିନରେ । ଚେଘନାଘେନ—ସ୍ନେହ ।

୫ । ତର୍ପଣ—ସନ୍ତୋଷ ।

୬ । ପୁଣ୍ଡ୍ରକ ବାସୁଦେବ—ପୁଣ୍ଡ୍ରକନାମ ଅସୁର କପଟରେ ବାସୁଦେବଙ୍କ ରୂପ ଧରିଥିଲା ଓ ତନିମନ୍ତେ ମରଣ ଦଶା ପ୍ରାପ୍ତ ହୋଇଥିଲା । ଚ୍ୟୁତ ହେଲା—ମଲା । ଲକ୍ଷି—ଲକ୍ଷ୍ୟ । ତଘୁଅଗେ···ତୋ ହରଣ ଗୃହଣୀ କ ଅନୁକରଣ କରିବାକୁ ହରିଣାଙ୍କ ହୋଇଅଛୁ ।

୭ । ଛଇଲ—ମୋହନ—ସୁଖ—ଘର—ରସିକଙ୍କୁ ମୋହିବାର ସୁଖଘର ହୋଇଅଛି । ଚନ୍ଦ୍ର କଥା ଚୋର—ଚନ୍ଦ୍ର କଥା ହରୁଛି । ଛୀର—କ୍ଷୀର ।

୮ । ଯାହା ଚନ୍ଦ୍ରପକ୍ଷେ···ଚନ୍ଦ୍ରର ଯେ ଷପ୍ତ ତାକୁ ଦଣ୍ଡ ବୋଲି କହିବାକୁ ହେବ । ଉଦ୍ଭେଦ—ପୂର୍ଣ୍ଣିମା । ରାହୁଦାଢ—ଗ୍ରହଣଗ୍ରସ୍ତ ହୁଏ । ଜାଣୁମଣି—ବିବେକବନ୍ତ । ଜଳନିଧି ସୁତ···ସମୁଦ୍ରରୁ ଜାତ ବୋଲି ଅଣେ ବା ଗର୍ବ ବହି ।

୯ । ଝଷକେତୁ—ମଦନ । ଝିମନ୍ତେ—ଟିକଏ । ଝାଡ଼—ବନ ଝଗଡ଼ୁଛି—ଦୁଃଖ ପାଉଛି ।

୧୦ । ନବବ୍ରତ ଦିନ—ବାଳକ ଦିନ ।

୧୧ । ଊର୍ଦ୍ଧ୍ୱରେତା—ଋଷି । ଠେକଥାନ୍ତି—ପ୍ରଶଂସା କରୁଥାନ୍ତି ।

୧୨ । ହେଲେ ସବୁଭାଷୀ—ମନକୁ ଯାହା ଆଇଲା ତାହା କହିଲେ । ଅଣି—ବଳ ।

୧୩ । ଡୋଳେଶ୍ୱରୀ—ନୟନାନନ୍ଦକାରିଣୀ । ଡହେ—ଦହନ କରେ । ଡଙ୍କ ଲାଗିଲେ—ସାପ କାମୁଡ଼ିଲେ ।

୧୪ । ଚମକ୍କର—ଫୁଲ୍ଲଇକରି, ଚାଲନେଁଣୀ—ବଙ୍କନୟନା ।
ଛତ୍ରୀ—ରଜା, ଚମପଟଣେ—ଫୁଲ୍ଲପଣରେ । ଫୁଲପଟ—
ଫୁଲଶର । ଚାଲବାଲୁ—ଭଙ୍ଗବାଲୁ । ନବମନ୍ତ୍ରୀ-ଦକ୍ଷବ୍ୟକ୍ତି
୧୫ । ଅବସାର ତୋର...ତୋର ବୃନ୍ଦାବନ ଗମନ ନୋହି
ଥିଲାରୁ । ମହାଦେବଠାରେ—ମହାଦେବଙ୍କ ହାତରେ ।
ଅଲକନୀ—ସ୍ୱକେଶବତୀ ।
୧୬ । ଯେନାଯେନ—ସପ୍ରେମ ଠାରୁ ଠାରୁ । କହୁଁ ଯୋଗ୍ୟତା
ଯେନ-କେହୁଁ ପଣ୍ଡିତ ପଣିଆରେ ।
୧୭ । ଥିରି—ପୃଥିବୀ । ଦମ୍ଭହତ ବାନା-ଧୈର୍ଯ୍ୟନାଶନ ପତାକା
ଥାଣ୍ଡୁ—ଦିବ । ଛତ୍ରବତ—ବ୍ୟତ୍ରବ୍ୟସ୍ତ । ଧାତ—ହୃଦୟ ।
୧୯ । ତୋ ଅକ୍ଷିର ଧଳା,କଳା ଓ ରଙ୍ଗ ଦେଖିଲେ ମନେହୁଏ
ତହିଁରେ ଧାତା, ହର ଓ ହରଙ୍କର ସମନ୍ୱୟ ଘଟିଅଛି ।
ଧୃତଧ୍ୱଂସୀ—ଧୈର୍ଯ୍ୟନାଶିନୀ ।
୨୦ । ତୋ ନେତ୍ର ନାଗରୀ ରସବତୀ—ତୋ ଅକ୍ଷି ରସିକନୀ ରମଣୀ
ସାଙ୍ଗେ ଭୁଲନୀୟ ।
୨୧ । ପାକଶାସନ—ଇନ୍ଦ୍ର ।
୨୨ । ଫୁରୁଛି—ସ୍ଫୁରିତ ହେଉଅଛି ।
ସ୍ଫୁଟମୁଖୀ—ପୂର୍ଣ୍ଣ ଯୌବନ ହେଉରୁ ଯାହାର ମୁଖ ଫୁଟିଲା
ପରି ଦିଶୁଥାଏ । ଫୁଲ୍ଲ ଅରବିନ୍ଦେ—ଫୁଟିଲା ପଦ୍ମରେ ।
ଫୁରୁଣାରେ—ଆନନ୍ଦରେ । ଫୁଲଲିଟ—ଭ୍ରମର ।
ଲକ୍ଷି— ଲକ୍ଷ୍ୟକରି ।
୨୩ । ଘାଇ ଲମ୍ବ ପାଇ—ଶୁକ୍ଳରଙ୍ଗ କାଳିମା ଥାଇ କର୍ଣ୍ଣାନ୍ତ
ପର୍ଯ୍ୟନ୍ତ ରଙ୍ଗ ତରଙ୍ଗ ଭିବରୁ ।

୨୪ । ବିଭମନା—ଅଧୈର୍ଯ୍ୟ । ଅନା—ପ୍ରକାର । ଭାବ ନ ଜଣାଇ ଯେଉଁ ଲୋକ—ଅରସିକ ଲୋକ ।

୨୫ । ମହାଯୋଗୀ—ମହାପବରେ—ମହାମହା ଋଷିମାନଙ୍କର ଧୈର୍ଯ୍ୟରୂପ ମହାମେରୁକୁ ଟାଳିବାକୁ ଯେ ବଜ୍ର ଅଟେ ।

୨୬ । ଯେମନ୍ତ ମୋ ସଙ୍ଗେ ରାମଥିଲେ—ତ୍ୱମ ଶୁକ୍ଳବର୍ଣ୍ଣ ଓ ମୁଁ କୃଷ୍ଣବର୍ଣ୍ଣ । ଅମ୍ଭେ ଦୁହେଁ ଜଗତର ଆନନ୍ଦଦାୟକ । କୃଷ୍ଣ ଓ ଧବଳ ଏହି ଦୁଇ ରଙ୍ଗର ମିଶ୍ରଣ ଯୋଗୁଁ ତୋ ନେତ୍ର ମଧ୍ୟ ତଦ୍ରୂପ । ସମ୍ଭବବା—ଜନ୍ମହେବା

୨୭ । ସ୍ମିତବାଣୀ—ଦରହାସ ମିଶା କଥା । ରାଗବନ୍ତ—ଅନୁରାଗୀ

୨୮ । ଲଳିତଲୋଲ ମହିମା—ଚକ୍ଷୁର ତରଳ ଚଞ୍ଚଳ ଭଙ୍ଗୀ ।

୨୯ । ବ୍ରଜବଧୂ ଶିରୋମଣି—ଗୋପୀଶ୍ରେଷ୍ଠା ରାଧା । ବେଭାରେ ରସିକ......ନାଗର ଭାବ ଅଣି—ଯେଉଁମାନେ ପ୍ରକୃତ ରସିକ ସେମାନେ ଗୁଣବନ୍ତ ନାରୀର ଅଭପ୍ରାୟ ବାଣ ତାର ପୂଜା କରନ୍ତି । ବଡ଼ କର—ଭୋଗ ପାଳି—ସ୍ତ୍ରୀ ଓ ଫୁଲମାନଙ୍କୁ ଯେତେ ପାଳିବ ତେତେ ସୁଖଭୋଗ କେଳି ବଢେ ।

୩୦ । ସୁମନା—ସ୍ତ୍ରୀ । ସୁମନ—ପୁଷ୍ପ । ସୁମନସ—ପଣ୍ଡିତ । ଏମାନେ ଯେତେ ଦୋଷ କଲେ ସୁଦ୍ଧା ବିବେକୀ ସୁପୁରୁଷମାନେ ତାହା କ୍ଷମା କରନ୍ତି । ଅବଧାନ—ଅନୁଗ୍ରହ ।

୩୧ । ସରସ ସନ୍ଦର୍ଭ ଗର୍ଭ ଭାବେ—ରସପୂର୍ଣ୍ଣ ହୃଦୟରେ । ସଙ୍ଗଭଙ୍ଗ—ବିଚ୍ଛେଦ; ତହିଁରୁ ବଳି ବଡ଼ ଘାତ ଆଉ ନାହିଁ ।

୩୨ । ଶ୍ୟାମ ଶାମା—ରାଧା କୃଷ୍ଣ । ଥକଭ—ସ୍ଥିର । ପଗଦର—ଛାଡ଼କର ।

୩୩ । ହେଲୁ ଭୂ···ଅମ୍ବର ନବଭ ଶୃଙ୍ଗାରରସ ବୃଷ୍ଟିକ ପବନ ହୋଇ ନାଶ କଲୁ । କଳ—ପାଶ୍ୱ ଥୋଇଥିଲୁ । ହର ବଇରି ଶର—କନ୍ଦର୍ପ ଶର ।

୩୪ । ଯଇଲ—ଛଇଲ ବା ରସିକ । ନ ଯମେ—ମଙ୍ଗଳରେ । ଯଣଦାକାଳ-ସନ୍ଧିକାଳ । ଯନ୍ଦ—ଛନ୍ଦ । ଆଭରଣବଧ୍ୟ-ଅଳଙ୍କାର ଧାପନ ।

---

## ଅନୁରାଗ ରତ୍ନାକର ଚଉତିଶା

୧ । କାଲକ-ସର୍ବଦା ।

୨ । ଥୋକାଏ-କଛ୍ଛ । କନକ ଗୋଣ୍ଡ—ସୁନା ଗୋଣ୍ଡ ।

୩ । ଗଳାର ହାର କହନ୍ତ । କନ୍ତୁ ହାର ପଦଖା ଥିବାରୁ ମନରେ କଷ୍ଟ ହେଉଚ । ଭାବ ଭାବ ବା ଗନ୍ଧଭଲକ କହନ୍ତ । ଭଲକେ—ଯଣକେ । ଭଲକେ ଅଛ୍ଛ ଭଲକେ ନାହିଁ—ସେଇଲାଗେ ଥାଏ, ସେଇଲାଗେ ଝଡ଼ପଡ଼େ ।

୪ । ଘେନାଘେନ-ସ୍ନେହ । ଘନସାର—କର୍ପୂର । ଘୁଣାକ୍ଷରକେ ଘୁଣପୋକ କାଠରେ ଅକ୍ଷର କଲାପର ।

୫ । ଛଦ୍ରେ—କପଟରେ । ଜୀବନ—ଜଳ । ଛଦ୍ରଦରଶୀ —(Critic) ଯେଉଁମାନେ ଛଦ୍ର ଖୋଜନ୍ତ ।

୬ । ବାଗ—ଆଚରଣ, କଥା । ତଟିନୀ—ନଦୀ । ତରଣୀ—ନୌକା ।

୮ । ହଂସ୍ତୂଳଭୁଳ—ହଂସଲୋମଶଯ୍ୟା । କୋମଳ (ବିଶେଷଣପଦ)
ଏଠାରେ ବିଶେଷ୍ୟ ହୋଇଅଛି ।

୯ । ପୁଷ୍ପକେତନ—କନ୍ଦର୍ପ । ପୁଲକଗଞ୍ଜିି—ପୁଟକାଙ୍ଗୀ ।
ବଚନଚୟନା—ବୋଲମାନଙ୍କ ।

୧୦ । ନିଧନଧନ————ଦୁଃଖୀସଙ୍ଗାଳ କହିବାକୁ ମନ-
ବଳୁନାହିଁ କାରଣ ଦୁଃଖୀ ତାଙ୍କୁ ବିକ୍ଷିପ୍ତ କରି ଶରୀର
ପୋଷଣ କରେ, କାମଧ୍ୱଜ ବା ଢବିନ୍ତ କନ୍ତୁ ତାହା
ପ୍ରତିକୂଳ ପବନରେ ପଛକୁ ପଡ଼େ ବୋଲି ମନ ବଳୁ
ନାହିଁ । କାହିଁକି ନା ତୁ ସବୁବେଳେ ଅଗରେ ଥାଉ,
ପଛରେ ରହିବା ଲୋକ ତୁ ନୋହୁ ।

୧୧ । ଟଙ୍କଧର ବଇରି—କାମଦେବ । କାମଦେବଙ୍କ ଟୋପରୁ
ତରିବାକୁ ଟୋଟେ ନିଶୁଣି ବୋଲି ଅବା କଦନ୍ତ, କନ୍ତୁ
ନିଶୁଣି କାଠରେ ତିଆରି ହୋଇ ଥିବାରୁ ମନ ବଳୁ
ନାହିଁ । ଟୋ ଟେକ ଅର୍ଥାତ୍ ଶରମାନଙ୍କୁ ବର୍ଣ୍ଣିନା କଲେ
ହିତଏ ସୁଦ୍ଧା ସରିବ ନାହିଁ । ହେ ଗୁରୁ—ନନ୍ଦମିତ୍ର ! ମୁଁ
କାହିଁକି, ମହେଶ ସ୍ୱଦ୍ଧା ତାହା ଶେଷ କରି ପାରିବେ
ନାହିଁ । ଠଣମଧ୍ୟ—ଟଶୋଭନକଣ୍ଠ । ସୁନ୍ଦର ସୀମା—
ସକଳ ଲାବଣ୍ୟର ଚୂଡ଼ାନ୍ତ ।

୧୩ । ମାନସ—ମାନସ ରାଜହଂସୀ- ମାନସ ରୂପକ ମାନସରୋ-
ବରର ରାଜହଂସୀ ।

୧୪ । ଭମ କହିବା—ଅତିରଞ୍ଜନ କରିବା । ଛଦ୍ମ—କପଟ ।
ପ୍ରେମ ଅନୁରୋଧରେ କପଟ କଥା ଇହସି ଭୁଲି
ଯଣଭଙ୍ଗୁର ।

୧୫ । ଅରଣ୍ୟ ବୋଲି — — —
ଅଧୈର୍ଯ୍ୟ ସମୟର କଥା ଓ ଅନଙ୍ଗ ପୀଡ଼ା ସମୟର ଗୃହ
ଏ ଦୁହେଁ ବାରଣ ମାନନ୍ତି ନାହିଁ । ମୁଁ ଯଦି ନିଜକୁ
ଭ୍ରମର ଓ ତୋତେ ଫୁଲ କହୁଚି ତେବେ ଉପମାରେ
ଦୃଷ୍ଟ ରହୁଚି । କାହିଁକି ନା ଭ୍ରମର ପଦ୍ମଠାରୁ ଯେ ବଣ
ମଲ୍ଲୀ ଯାଏ ସମସ୍ତଙ୍କ ସଙ୍ଗରେ ପ୍ରୀତିକରେ ଓ ସେ ପ୍ରୀତି
ଐକାନ୍ତିକ ବା ଚିର ନୁହେଁ ।
୧୬ । ଖମଣ୍ଡଳେ—ଆକାଶରେ । କଇରବ—କଇଂ ।
୧୮ । ମଦନଶର ଦୂର ଅଦୂର ଉଭୟ ଅବସ୍ଥାରେ ଶରୀରକୁ ଦୁଃଖ
ଓ ଦୁଃଖ ଦିଏ ।
୧୯ । ହେ ସଖେ ତୋତେ କନ୍ଦର୍ପରୋଗକୁ ଔଷଧ ଲେଖା କରନ୍ତି
କିନ୍ତୁ ତହିଁର ପ୍ରଭା ଚନ୍ଦ୍ର କରଣ ଦ୍ୱାରା ବଢ଼େ ।
ହୃଦୟର ବାଣୀ କହିଲେ ତାହା ମଧ୍ୟ ତୋ କଥା ମାଧୁରୀରୁ
ଉଣା ବା ନ୍ୟୂନ ହେଉଛି ।
୨୦ । ତୋତେ ଚନ୍ଦ୍ର ଓ ମୋତେ ଚନ୍ଦ୍ରମଣି ଅବା କହନ୍ତି
କିନ୍ତୁ ଚନ୍ଦ୍ର କେବଳ ରାତ୍ରିରେ ଚନ୍ଦ୍ରମଣିକୁ ତରଳାଏ ।
ତୁ ପରା ମୋତେ ଦିନ ରାତି ତରଳାଉ !
୨୧ । ପୀବରସ୍ତନା—ବର୍ତ୍ତୁଳଉରଜା
୨୨ । ଫୁଲ ସମୟ—ବସନ୍ତ । ପୟୋଦକାଳ—ବର୍ଷା ଋତୁ । ରହିତ—
ଅନୁଷ୍ଠା ଅବଲମ୍ବିତ—ଶୀଘ୍ର ।
୨୩ । ତୋତେ ବାଣୀବନୀ କହିଲେ ବିବେକହୀନତାର ପରିଚୟ
ଦେବାକୁ ହେବ । କାରଣ ପ୍ରକୃତ ରାଗ ନ ହେଲେ
ବୀଣାରୁ ସାରି ଗାମା ପାଧା ନିସା ଜାତ ହୁଏ ନାହିଁ ।

ବର୍ଣ୍ଣି ଉଚ୍ଚାରଣ କର ହୃଦୟରେ ପ୍ରେମସଞ୍ଚାର କରିବା ତାର ସାଧ୍ୟାତୀତ ।

୨୫ । ମନ୍ଦା ଆରମ୍ଭ—ମନ୍ଦାକ୍ରାନ୍ତା ।

୨୬ । ଜୀବନ ଥିବାଯାକ ସେମାନଙ୍କର ମନ ଧ୍ୟାନ ଅନ୍ତରକୁ ଯିବ ନାହିଁ ।

୨୭ । ରୋଲମ୍ବ—ଭ୍ରମର । ପତଙ୍ଗ—ପକ୍ଷୀ । ପତଙ୍ଗ—ସୂର୍ଯ୍ୟ । ରଙ୍ଗଭଙ୍ଗ—ରଙ୍ଗବର୍ଣ୍ଣନାଶ । ପଦ୍ମରାଗ—ରକ୍ତବର୍ଣ୍ଣ ମଣିବିଶେଷ ।

୩୧ । ଲୋକପାଳକ—ବ୍ରହ୍ମା ।

୩୧ । ସନ୍ତାପକର—ସୂର୍ଯ୍ୟ । ଅମରଗିରି—ମେରୁପର୍ବତ । ମୃଗରାଜ—ସିଂହ ।

୩୩ । ଦ୍ୱାରଦ୍ୱାରରେ—ଦ୍ୱାରଦ୍ୱାରରେ । ହଂସ—ସୂର୍ଯ୍ୟ । ଛନ୍ଦ—ଛନ୍ଦନ—ସ୍ୱଚ୍ଛନ୍ଦ । ଘୋର—ଗାଢ଼ ।

---

## ଦୃଷ୍ଟାନ୍ତ ଚଉତିଶା

୧ । କମଳନୟନ—କୃଷ୍ଣ । ଗୁଆଁର—ପାମର ଗୋପକ । ପାବନ୍ତ ମୂର୍ଖକୁ କବିତା ବୁଝାଇବା ଯେପରି ଅସମ୍ଭବ ପ୍ରଭୁ କୋପ କଲେ ଉପାୟ ବିଧାନ କରିବା ସେପରି ଅସମ୍ଭବ ।

୨ । ପ୍ରତିପଦାରେ ପାଠ ପଢ଼ିଲେ ବିଦ୍ୟା ନାଶ ଯାଏ ।

୩ । ଗିରିନଦୀ ଅଳ୍ପକେ ବଢ଼ି ଛାଡ଼ିଯାଏ । ସ୍ୱାଧାର ସ୍ନେହ ସେହିପରି ହେଲା ।

୪ । ଧନ ବନ୍ଧୁଙ୍କ ସ୍ନେହ ଅଛି ଅଳ୍ପକାଳସ୍ଥାୟୀ । ମେଘର ଛାଇ ମଧ୍ୟ ଅଛି ଅଳ୍ପକାଳ ସ୍ଥାୟୀ ।

୫ । ଇନ୍ଦ୍ର—ଅଶ୍ରୁ ।

୬ । ଗୃମୀକର—ସୁନା । ଚନ୍ଦ୍ରଅବତଂସ ନନ୍ଦନ ଜନମ ତିଥି ମୋତେ କଲ—ଗଣେଶ ଚତୁର୍ଥୀରେ ଚନ୍ଦ୍ରର ମୁହଁ ଗୃହାନ୍ତି ନାହିଁ । ସେହିଭଳି ମତେ ନ ଗୃହିଁ ଗୃଲଗଲ ।

୭ । ବକା କୁସୁମ—ଗଇସ । ମତେ ଗଇସ ଫୁଲ ପରି କଲ ଅର୍ଥାତ୍ ଶ୍ରେଷ୍ଠ ଗଇସ ଫୁଲ ଛୁଡ଼ି ଗଲେ କୁଅଡ଼ାଇ ଯାଏ ନାହିଁ ।

୯ । ଚଣ୍ଡୀଙ୍କ ନିକଟରେ ଥିଲେ ସୁଦ୍ଧା ଥିଲେ ଦରିଦ୍ର ଲୋକର ଦରିଦ୍ରତା ଦୂର ହୁଏ ନାହିଁ । ଚନ୍ତାମଣି—ଚନ୍ତାଗ୍ରସ୍ତ ।

୧୦ । ନଷ୍ଟେ ଜାଣିଲ···ଭାବବତୀର ଭାବ କୁସୁମ ଗନ୍ଧ ପରି ମଣ୍ଡନ ଗନ୍ଧ । ନାଶଇଛ···ସୁଖର ଦନ ବହୁଗୁଣିତ ହେଲେ ମଧ୍ୟ ପୂର୍ବ ଭୁକ୍ତ ସନ୍ତାପର ସ୍ମୃତି ଲିଭାଇ ପାରେ ନାହିଁ ।

୧୧ । ମନହିକ—କନ୍ଦର୍ପ । ହରମାଳକା—ରୁଦ୍ରାକ୍ଷ ମାଳୀ । ଠଙ୍କଧର ରପୁ—ମଦନ । ବଳଷ୍ଠ ସିଂହ ମୁଖରେ ମୃଗ ପଡ଼ିଲେ ସେ ଯେପରି ନିରୁପାୟ ହୁଏ ମୁଁ ସେହିପରି ହୋଇଅଛି ।

୧୨ । ରଙ୍ଗ—ସୁବର୍ଣ୍ଣ । ଠାକୁର ହୋଇ···ସୁନା ଯଦି ଠାକୁର ମୂର୍ତ୍ତି ହୋଇ ରହେ ତେବେ ସମସ୍ତେ ତାର ବହୁମୂଲ୍ୟତା ସ୍ୱୀକାର କରନ୍ତି, କିନ୍ତୁ ଦରିଦ୍ର ଲୋକ ହାତରେ ସେହି ସୁନା ରହିଲେ ତାହା ରଜତ କି ରୂପା ବୋଲିବ ।

୧୩ । ଡରୁଥାଇ ତାର—ପାନବ୍ୱଣୀ ତାର ପାନ ଶୁଖିଯିବବୋଲି ଯେପରି ଡରୁଥାଏ ତାହା ମୁହଁ ଶୁଖି ଯିବାକୁ ମୁଁ ସେପରି ଡରୁଥାଏ ।

୧୪ । ଫେରି ଯରି କର—ଫଣା ଟେକ ।

୧୫ । ଅବନାବଣୀର—ଲଉକା କାଠ ବାଡ଼ରେ ନ ମାଡ଼ି ପାରିବାରୁ ଖସି ପଡ଼େ ସେଥିଯୋଗୁ ତାର ସ୍ନେହ କାଠ-ବାଡ଼ରୁ ଊଣା ହୁଏ ।

୧୬ । ତପନୀୟ—ସ୍ୱର୍ଣ୍ଣ । ଅଙ୍ଗହାର—ଅଙ୍ଗର ଭୂଷଣ । ହାର—ଗଳାମାଳି ।

୧୭ । ଘନଲତା—ବଜ୍ରୁଲି । ବନଜ—ପଦ୍ମ । ଥିରମଣ୍ଡନୀ—ଧିର ମଣ୍ଡନା ।

୧୮ । ଦ୍ୱିରଦ ଗମନୀ—ଗଜଗମନା । ଯଥା ଦୟା କରବ କି ନ କରବ ଏକଥା ଜାଣି ନ ଥିବାରୁ ଅନିର୍ଦ୍ଦିଷ୍ଟଭାଗ୍ୟ ଦ୍ୱାରସ୍ଥିତ ଭିକାରୀ ପରି ମୁଁ ସନ୍ଦେହରେ ପଡ଼ିଛି । ଦୂରୁ ଦେଖିଲେ—ଦୂରରୁ ଦେଖିଲେ ସେ ମନୁଷ୍ୟମାନଙ୍କୁ ଦେବତାମାନଙ୍କ ଗୃହିଁବା ଅର୍ଥାତ୍ ନିର୍ନିମେଷ ଦୃଷ୍ଟି ଦିଏ ।

୧୯ । ଧ୍ୱଂସି ଦେଲେ·····ଯେପରି ବ୍ୟାଧିଗ୍ରସ୍ତ ଲୋକର କାତର ବାଣୀ ବୈଦ୍ୟ କଣ୍ଠରୁ ବାହାରିବା ଅସମ୍ଭବ ସେହିପରି ମୋ ଦୁଃଖ ତା ହୃଦୟରେ ପ୍ରତିବମ୍ବିତ ହେବା ଅସମ୍ଭବ ।

୨୦ । ଅନ୍ତପଟ ଅନ୍ତ—ଲୁଗାବାଡ଼ ପଛ ଅଡ଼େ ଥିବା । ଉତ୍କାହା—ଉତ୍କଣ୍ଠିତ ।

୨୧ । ପଶୁପତି-ରିପୁ-ସନ୍ତାପ-ଅନଳେ—କାମାନଳେ । ପଙ୍କଜ-କର—ସୂର୍ଯ୍ୟ ।

୨୨ । ଫଳ ଥାଉ······ଫଳ ଥାଉ ଫୁଲ ବିଶିଖ ପତି ଯେ କନ୍ଦର୍ପ ସେ ଫୁଲକୁ ଭୋଗ କଲା । ଶିଲୀମୁଖ—ଭ୍ରମର ।

୨୩ । ବାଲିଶ—ମୂର୍ଖ । ବାତ—ପବନ ।

୨୪ । ଭବରିପୁ—କନ୍ଦର୍ପ ।

୨୫ । ମଦର—ମତ୍ତ ଖଞ୍ଜନ । ଯେନାଯେନ ଭାବ—ସ୍ନେହଭାବ ମରାଳକେତନ ମାନସ···ବ୍ରହ୍ମାଙ୍କ ମନ ଯେପରି ସମସ୍ତଙ୍କ ପ୍ରତି ପୃଥକ୍ ପୃଥକ୍ ସେହିପରି କନ୍ଦର୍ପ ଆମ୍ଭ ଦୁହିଁଙ୍କୁ କରନ୍ତି ।

୨୬ । ଜାତୂସ୍ରଣି···ମୋତେ ଗୁରୁ ନେ ବୃହସ୍ପତି ବାମ ହେଲେ । ବାମଦେବ ଯେ ମହାଦେବ ହୋଇଅଛନ୍ତି । ଲସ୍ତ—ନୀଚ ଲୋକ । ଲଘୁ କରାଇଲା—ହେଠ କରାଇଲା । ଶାଳକା ଫୁଲ—ଶାଆଳିଫୁଲ, କଲମାଦ ଧାନ୍ୟପୁଷ୍ପ । ଏହା ଅତି କୋମଳ । ଜାଣିଥିଲି ତାର···ମୁଁ ଜାଣିଥିଲି ରାଧାର ହୃଦୟ ଶାଳକା ଫୁଲ ପରି କୋମଳ କିନ୍ତୁ ବର୍ତ୍ତମାନ ତାହା ଶୁଷ୍କ ପଥର ସାଙ୍ଗେ ତୁଳନୀୟ ହେଲା ଅର୍ଥାତ୍ ରାଧାର ହୃଦୟ ମୋ ପ୍ରତି ପାଷାଣ କଠିନ ହେଲା ।

୨୭ । ରଙ୍ଗେ—ବିଳାସରେ । ରାଗ—କ୍ରୋଧ । ରଥାଙ୍ଗ ରଜନୀ ଦଶା—ଚକ୍ରବାକମାନଙ୍କର ରଜନୀରେ ବିଚ୍ଛେଦ ହୁଏ । ମୋତେ ଏବେ ସେହି ଦଶା ପଡିଲା ।

୨୮ । ଲୋକନାଥ—ବିଧାତା । ଲେଶେ ତାର ମୋର········ ରାଧାର ମୋର ପଲକ ମାତ୍ରକ ପାଇଁ ଯେବା ଅନ୍ତର

ନ ଥିଲା । ବର୍ତ୍ତମାନ ସେ ସୁଖ ଆକାଶ କୁସୁମ ପରି ହୋଇଅଛି । ଅର୍ଥାତ୍ ଅକାଶରେ ଫୁଲ ଫୁଟିବା ଯେପରି ସମ୍ପୂର୍ଣ୍ଣ ଅସମ୍ଭବ ତଥା ସହିତ ମୋର ମିଳନ ଯେପରି ଅସମ୍ଭବ । ଲୋଚନ–ଶ୍ରବଣ–ମଣ୍ଡନ—ସର୍ପ ମଣ୍ଡିତ ମହାଦେବ । ଲମ୍ବ ଉଦର–ଗଣେଶ ।

୩୦ । ଇନ୍ଦ୍ର ପଦବୀ–ଇନ୍ଦ୍ର ସମ୍ପତ୍ତି ।

୩୧ । ଶଶୀମୁଖୀ—ଚନ୍ଦ୍ରମୁଖୀ । ପୟ—କ୍ଷୀର । ସରୂପ ସର୍ପଙ୍କୁ—କରତ ପ୍ରାପ୍ତେ ଦେବନ୍ତ ସାପଙ୍କୁ କ୍ଷୀର ଦେଲେ ସେ ପ୍ରତ୍ୟୁଷରେ ଗରଳ ବାନ୍ତ କରେ । ସେହିପରି କନ୍ଦର୍ପକୁ ପୟ ଦେଇଅଛି । ଶଙ୍କାର କରତ ସର ହୋଇ କ ସମାନ ହୋଇ ଦୂରଅଛି କାହିଁ । ସେହିପରି ଏଣ୍ କନ୍ଦର୍ପ କାଟୁଛି, ତେଣୁ ତଥା କାଟୁଛି । ମୁଁ ମଧ୍ୟରେ ରହି ବିରହ ବ୍ୟାକୁଳତା ଅନୁଭବ କରୁଅଛି ।

୩୨ । ଅଦାଲ୍ଚା—ନିର୍ଦ୍ଦୟତା । ଶମ୍ଭୁ—ଶିବ ।

୩୩ । ପୁଷ୍ପ ସମାନ ହୋଇବ—ପ୍ରଫୁଲ୍ଲିତ ହୋଇବ । ପ୍ରକାଶିବ ଆନ–ଅନ୍ୟ କଥା କହିବ । ସନ୍ଦେଶ–ଖବର ।

୩୪ । ହରିଣନୟନୀ–ମୃଗନେତ୍ରୀ । ପଦ୍ମଃପେକ୍ଷୀ–କାନ୍ତିଅ । ଘନରସ—ମିଠାପାଣି, ଶୃଙ୍ଗାର ରସ । ସହର୍ଷ–ଆନନ୍ଦ ।

୩୫ । ଯେମେ–ମଙ୍ଗଳରେ । ଯୋଗ–ଶୃଙ୍ଖଳ୍ୟ । ଗୋଟି ଅଙ୍କୁରି ଦଶାକୁ ବହି ନାମମାନ ସଙ୍ଗର ଦଉ, ପିଞ୍ଜରାରେ ଥିବା ପକ୍ଷୀ ଦଶାକୁ ବହି ।

# ରାଧିକା ସ୍ମରଣ ଚଉତିଶା

୧ । କମଳ ନୟନ—କୃଷ୍ଣ । କଂସ କଟକ—କଂସ ନଗର । କଳକଣ୍ଠକଣ୍ଠୀ—ପିକଭାଷିଣୀ । ନକ୍ଷତ୍ର କଣ୍ଠୀ—ଅମୂଲ୍ୟ ରତ୍ନମାଳା ।

୨ । ଖଳ—ଦୁଷ୍ଟ ।

୬ । ଚନ୍ଦ୍ର କିରଣରେ ଚନ୍ଦ୍ର କାନ୍ତମଣି ଆର୍ଦ୍ର ହୋଇଥାଏ । ଚଣ୍ଡକର ଅର୍ଥାତ୍ ସୂର୍ଯ୍ୟଙ୍କ କିରଣରେ ଚଣ୍ଡମଣି ବା ସୂର୍ଯ୍ୟ କାନ୍ତମଣି ଶୁଖିଯାଏ ।

୮ । ଗଞ୍ଜିନା—ଗଞ୍ଜନ । ଜମ୍ବୁନଦ ଗୋଷ୍ଠ—ସୁନା ଗୋଷ୍ଠ ।

୯ । ଝୁରଣ୍ଟି—ବୃନ୍ଦାବନର ପକ୍ଷୀବିଶେଷ । ଝାମ ଯାଉଥିବ—ଝାଉଁଳି ମାରୁଥିବ । ଝସକେତୁ ଶରେ—କନ୍ଦର୍ପ ଶରରେ । ଝଲକ ବଦନୀ—ସମୁଜ୍ଜ୍ୱଳ ମୁଖୀ, ସୁନ୍ଦର ମୁଖୀ । ଝଲ ଯାଉଥିବ—ଓଦା ହୋଇ ଯାଉଥିବ ।

୧୦ । ଦୂଷଣ—ନିନ୍ଦା । ନେହନୀରେ···ଚକ୍ଷୁର ସ୍ନେହଜଳରେ ଭାସି ଯିବା ଭୟରେ ତାଙ୍କୁ ନିଦ୍ରା ଆସିବ ନାହିଁ ।

୧୧ । ଅନଙ୍ଗ—କନ୍ଦର୍ପ । ଟଳଟଳ—ଥରଥର । ଟେକଲାବଣ୍ୟ—ବିଶେଷ ସୌନ୍ଦର୍ଯ୍ୟ । କୁଚ କଳଶେ—ସ୍ତନ କୁମ୍ଭରେ । ଅଙ୍କରେ—କୋଳରେ । ଟଙ୍କଧର—ମହାଦେବ । ଟେକସ୍ୱର ହୋଇ—ବଡ଼ ପାଟି କରି ।

୧୨ । ଅପାରୁଅପାର—ଅସୀମରୁ ଅସୀମ । ଠାଠିକ କର—ଅଛି ଠିକଣା କର ।

୧୪ । ଗଣ୍ଡପାଲୀ—ଗଣ୍ଡସ୍ଥଳ । ପ୍ରସଙ୍ଗ—ବିଷୟ । ସୁରଙ୍ଗ-କୁରଙ୍ଗ-ନୟନ-ତରଙ୍ଗ—ମୃଗ ନୟନାର ସୁନ୍ଦର ଚଞ୍ଚଳ ଚାହାଣୀ । ଉପ୍ରୋଧ—ଅନୁରୋଧ ।

୧୫ । ମଧୁର ରଜନୀ—ବସନ୍ତ ସମ୍ପୃକ୍ତ ରାତ୍ରି ।

୧୬ । ତାପତଟିନୀ ତଟ……ବର୍ଷା ପ୍ରଖର—ମୋର ହୃଦୟ ସନ୍ତାପ ରୂପକ ନଦୀକୂଳସ୍ଥିତ ବୃକ୍ଷ ପରି ହୋଇଅଛି । ତା ଉପରେ କାମଦେବ ପ୍ରବଳ ଶର ବୃଷ୍ଟି କରୁଅଛି ଅର୍ଥାତ୍ ମୋହର ହୃଦୟ କନ୍ଦର୍ପ ବେଦନା ଦ୍ୱାରା ବ୍ୟଥିତ ।

୧୭ । ପ୍ରସନ୍ନ (ବିଶେଷଣ ପଦ) ବିଶେଷ୍ୟ ରୂପେ ବ୍ୟବହୃତ ।

୧୮ । ବନ୍ଧୂକ ଅଧର—ବନ୍ଧୂଲୀ ଫୁଲ ପରି ରକ୍ତବର୍ଣ୍ଣ ଓଷ୍ଠ । ଦରହାସ—ମନ୍ଦହାସ । ଦରବେ—ଦୈବବଶତଃ । ନିଶ୍ୱାସ—ବିରହ ଜନିତ ନିଶ୍ୱାସ । ସୁରଙ୍ଗ ବେଭାର—ଓଷ୍ଠ ରକ୍ତିମା । ଝଳ—ଶୋଭା । ମୁକୁତାମାଳ—ମୁକ୍ତାହାର ।

୧୯ । ପ୍ରମାଦ ପ୍ରୀତିକି—ବିପଦ ଜାତ କରୁଥିବା ପ୍ରୀତି । ଧ୍ରୁବ—ନିଶ୍ଚିତ । ଧ୍ରୁବଲୋକେ—ଧ୍ରୁବ ମଣ୍ଡଳରେ । ହଠ—ହଇରାଣ, କପଟ ।

୨୧ । ବରଷାପାଷାଣ କଲାପ—ବର୍ଷାରେ ପଡୁଥିବା ପଥର ସମୂହ । ପୀତ ବସନୀ—ହଳଦିଆ ପାଟ ପିନ୍ଧିଥିବା । ପୁଷ୍ପ କାଲ—ବସନ୍ତ ଋତୁ । ପଲ୍ଲବ—ଦଶନ—ବସନୀ—କୋମଳ ପତ୍ରାଧରା, କିଶଲୟାଧରା ।

୨୨ । ଫୁରୁଣାରେ—ଆନନ୍ଦରେ ଫୁଲ୍ଲ-ବିକସିତ ।

୨୩ । ବିରଞ୍ଚି—ବ୍ରହ୍ମା ।

୨୪ । ଭୂପତି—ରାଜା । ଭବତ୍ରାତା—ଭଗବାନ୍ । ଭାବେ—ସ୍ନେହରେ । କମଳା—ଲକ୍ଷ୍ମୀ ।

୨୬ । ଘନ କାଳରେ—ବର୍ଷା କାଳରେ । ମରାଳ ଗମନୀ—ହଂସ ଗମନା । ଅତଙ୍କ—ଦୁଃଖ ।

୨୭ । ଉତ୍ପଳ—ପଦ୍ମ ।

୨୮ । ଲଳିତ ଲପମୀ—ସୁନ୍ଦର ବଦନା । କ୍ଷମା-ଜଳନିଧି—କ୍ଷମାସାଗର । ସୁମନା—ଉତ୍ତମ ମନା ।

୨୯ । ମଦନ କଦନ—ମଦନ କନ୍ଦଣ ।

୩୦ । ବସୁମତୀ (ସର୍ବଂସହା)—ପୃଥିବୀ । ଶୀର୍ଣ୍ଣ—କ୍ଷୀଣ । ଶିବ ଶିବ ଶିବ—ବାରମ୍ବାର ସମ୍ବୋଧନ ହେତୁରୁ ଲିଖିତ ।

୩୧ । ଶକଳ—ଚନ୍ଦ୍ରମା ଅର୍ଥାତ୍ ଚନ୍ଦ୍ରମା—ଶକଳ ଶଶୀ ଖଣ୍ଡ । ସକଳ ଚନ୍ଦ୍ରମୁଖୀ—ପୂର୍ଣ୍ଣଚନ୍ଦ୍ରମୁଖୀ । ଦଶା—ଅଭିଳାଷ, ଚିନ୍ତା, ସ୍ମୃତି ପ୍ରଭୃତି କାମଜ ଦଶା । ନବମ ଦଶା—ମୂର୍ଚ୍ଛା । ମନୋଭବ—କନ୍ଦର୍ପ । ଶଙ୍ଖ ଚକ୍ରପାଣି—ଶଙ୍ଖ ଚକ୍ର ହସ୍ତ ଭଗବାନ୍ ।

୩୨ । ସଜଳ ନୟନା—ସଲୋତକ ନୟନା । ସୁମନ—ଉତ୍ତମ ମନ ଯାହାର । ସୁମନସ ଶର—ଫୁଲ ଶର କନ୍ଦର୍ପ ।

୩୩ । ସାରସ—ପଦ୍ମ ।

୩୪ । କ୍ଷପାକର ମୁଖୀ—ଚନ୍ଦ୍ରମୁଖୀ । କ୍ଷୋଭ—ଦୁଃଖ । କ୍ଷେମେ—ମଙ୍ଗଳରେ । ଉଦ୍ଧବ ଚଉତିଶା ।

୧ । କୁସୁମ ଶରେ—କନ୍ଦର୍ପ ବାଣରେ । ତାପୀ—ଦୁଃଖୀ, ସନ୍ତପ୍ତ । ଶଫଲ ନନ୍ଦନ—ଅକ୍ରୁର । ବଫଲଙ୍କୁ ନେଲ୍ଲ ଆମ୍ଭଙ୍କୁ—ଅର୍ଥାତ୍ କୃଷ୍ଣଙ୍କୁ ଗୋପ ପୁରରୁ କଂସ ନଗର ମଥୁରାକୁ ନେଇ ଆମ୍ଭ ଜୀବନ ବ୍ୟର୍ଥ କଲ୍ଲ ।

୨ । ସ୍ନିଗ୍ଧ—ଲକ୍ଷଣୀ । ଦାରୁହସ୍ତ ପର୍ଯ୍ୟେ ପରବଶେ ଭ୍ରମି ମରଇ—ଯେପରି ବାଣକାର ପର ସନ୍ଧାନେ ଶ୍ରମ କରି ବୁଲେ । ଖାଇବା ପିଇବା······ପର୍ଯ୍ୟକୁ ନାଶନ୍ତି— ସାପର ଦଂଶନ ଦ୍ୱାରା ପେଟ ପୂରୁ ନ ଥିଲେ ସୁଦ୍ଧା ସେ ଦଂଶନ କରେ । ସେହିପରି ଅକ୍ରୂରର କିଛି ସ୍ୱାର୍ଥ ନ ଥାଇ ସେ କୃଷ୍ଣଙ୍କୁ ନେଇଗଲା ।

୩ । ନର୍ତ୍ତିତ କଣ୍ଠେମାଳୀ—ବେକର କଳା ରହି କଣ୍ଠିମାଳୀ । ଗଣ୍ଠିଆ—କୃପଣ । ଗୁଆଁର—ମୂର୍ଖ, ନିର୍ବୋଧ । ଗାଈ ବାରଣ ବାଡ଼—ଗାଈମାନଙ୍କୁ ବାରଣ କରିବା ନିମନ୍ତେ ବନ୍ଧା ହୋଇଥିବା ବାଡ଼ ।

୪ । ଗୋପପୁର ଅବତଂସ—ଗୋପପୁରର ଶିରୋଭୂଷଣ ସ୍ୱରୂପ ଶ୍ରୀକୃଷ୍ଣ । ହଂସ—ସୂର୍ଯ୍ୟ ।

୫ । କାହାଭାବେ—କେଉଁ ସ୍ତ୍ରୀର ପ୍ରୀତିରେ । ନୀତିବନ୍ତ—ନୀତି ନିପୁଣ ।

୬ । ଚନ୍ଦ୍ରଚୂଡ଼—ମହାଦେବ । ଚତୁର ପଣ ମହିମାକୁ—ଚନ୍ଦ୍ରଚୂଡ଼ ଅନୁଭବ କରିଥିଲେ ପର୍ଯ୍ୟନ୍ତ ବ୍ରହ୍ମାଙ୍କୁ—ଶିବ ବାଣାସୁରର ପକ୍ଷପାତୀ ହୋଇ କୃଷ୍ଣଙ୍କ ସଙ୍ଗେ ଯୁଦ୍ଧ କରି ପରାସ୍ତ ହେଲେ ଏଣୁ ସେ କୃଷ୍ଣଙ୍କ ଚତୁରପଣ ମହିମାକୁ ଜାଣିଥିଲେ । କୃଷ୍ଣଙ୍କ ଚତୁର ପଣିଆ ବ୍ରହ୍ମା ବତ୍ସ ହରଣରେ ଜାଣିଥିଲେ ।

୭ । ଅହୀରୀ—ଗଉଡୁଣୀ । ବନଚରୀ—ବନବୁଲା । ଘୋଷବାସୀ—ବନବାସୀ ।

୧୧ । ହେକ ତୃଷାର୍ତ୍ତି—ବଡ଼ ତୃଷାର୍ତ୍ତି । ଗ୍ରହପାଇଁ—ଅଗ୍ରହପାଇଁ ।

୧୪ । ଥାଲେ—ଥରେ ।

୧୫ । ଅଦୃଷ୍ଟ—ଭାଗ୍ୟ ।

୧୭ । ସ୍ୱାତିଜଳ—ସ୍ୱାତୀ ନକ୍ଷତ୍ରରେ ବର୍ଷିତ ବର୍ଷା ଜଳ । ଅଂଶ—ଶିବ । ସେନ୍ଧା—କବର ।

୨୨ । ଫୁଲ୍ଲାରବିନ୍ଦ ବଦନ—ପ୍ରଫୁଲ୍ଲିତ ପଦ୍ମମୁଖ କୃଷ୍ଣଚନ୍ଦ୍ର ।

୨୫ । ପୋତ—ଜାହାଜ ।

## ଗୋପୀ ସନ୍ଦେଶ ଚଉତିଶା

୧ । କୈତବ କୃପାସିନ୍ଧୁ ନାମ—କପଟ କୃପାସିନ୍ଧୁ ନାମ । ଖମଣ୍ଡଳ—ଆକାଶରୁ । ଖଚର—ଗଗନଚାରିଣୀ ।

୪ । ଘୁଣାକ୍ଷରେ—ଘୁଣା ପୋକ କରିଥିବା ଅକ୍ଷର ପରି ।

୫ । କଟାକ୍ଷ ଶରହାଣି ।

୬ । ଚତୁର୍ବର୍ଗ—ଧର୍ମ, ଅର୍ଥ, କାମ ଓ ମୋକ୍ଷ ।

୧୧ । କଇରବ—କଇଁ ।

୧୮ । ଦଶ ଚଉଦ ଲୋକ—ଚଉଦ ଭୁବନ ।

୧୯ । ଧରାଧର—ପର୍ବତ (ଶିଳ୍ପ) ।

୨୫ । ମହେଶ—ମହାଦେବ । ବସୁନ୍ଧରା—ଧରଣୀ ।

୨୯ । ଛୀର—କ୍ଷୀର ।

୩୩ । ହଟକର—ଭଣ୍ଡିବା ଲୋକର ହଟହାଟକ—କପଟସୁବର୍ଣ୍ଣ

## ବଉଳ ଚଉତିଶା—

୨ । ଚୋରା କର—ସୁନ୍ଦର କର, ଝଟକ କର । ଖରେ—ଚଞ୍ଚଳ ।

୩ । ଗଞ୍ଜଇ—ଦହାଇ ଦଏ ।

୪ । ଘଟ୍ଟଥାନ—ଗହଣ ଘଣୁଥାଏ ।

୬ । ଭୃଙ୍ଗଲ—ଭ୍ରମର ।

୧୧ । ମୋଡ଼—ଖାଡ଼ ।

୧୩ । ଡଙ୍କା—ଅଭ୍ୟାଗତ । ଡଙ୍ଗ—ଖଳ ।

୧୭ । ବେଅକ୍ଷ—କ୍ରୂରକର୍ମା, ଦାରୁଣ ।

୨୨ । ଫୁରୁଣା—ଅନନ୍ଦ ।

---

## ବାନ୍ଧବୀ ଚଉତିଶା

୫ । ବାହୁବଲ୍ଲୀ—ବାହୁଲତା ।

୭ । ମନ୍ଦ—ମୁଗ୍ଧ ।

୯ । ଅଦା-କନ୍ୟା—ସନ୍ଦାନୁଭୂତ ଦେଖାଉବା ଲୋକ ।

୧୨ । ଖଟିକୀ—ଝିଙ୍କି ।

୧୪ । ସବ୍ୟସାଚୀ ସାଧନା—ବାମହାତରେ ଅର୍ଜ୍ଜୁନଙ୍କ ପରି
ଶରମାରିବାରୂପ ସାଧନା—

୧୫ । ସେ ଦେହରେ ଶବଙ୍କ ପ୍ରେଷିତ ଅନଳର ଜାଳା ଅନୁଭବ
କରିଥିଲା ।

୧୮ । ଦ୍ୱିଜରାଜମୁଖୀ—ଚନ୍ଦ୍ରବଦନା ।

୨୮ । ବେପଥୁ—କମ୍ପ, ସ୍ତମ୍ଭ—ମୋହାବସ୍ଥା, ବିସ୍ୱର—ସ୍ୱରଭଙ୍ଗ,
ସ୍ୱେଦପ୍ରଳୟ—ଝାଳର ସମୁଦ୍ର ।

୩୪ । କ୍ଷପାକର ବଦନା—ଚନ୍ଦ୍ରମୁଖୀ ।

---

## ନବଘନ ଚଉତିଶା

୨ । ଷଣକାନ୍ତ—ବିଜୁଳି ।

୩ । ତୁମ୍ଭେ ହସ୍ତୀ ପରି ହୋଇଅଛ । ତୁମ୍ଭର ଗର୍ଜ୍ଜନ ହସ୍ତୀର ବୃଂହିତ (ଗର୍ଜନ) ପରି । ତୁମ୍ଭର ଜଳଧାର ଦାନ ଅର୍ଥାତ୍ ହସ୍ତୀର ମଦ ବାରିଧାରା ପରି ଆଉ ଯେଉଁ ବକମାନେ ଧାଡ ଧାଡ଼ ହୋଇ ଆକାଶରେ ଉଡୁଅଛନ୍ତି ସେମାନେ ତୁମ୍ଭଠାରେ ହସ୍ତୀର ଦନ୍ତବତ୍ ଦେଖାଯାଉଅଛନ୍ତି ।

୪ । ଘନବଲ୍ଲୀ—ବିଜୁଳି ।

୫ । ନାଗ—ମେଘ । ନାଗ—ଶାପ । ବିଷ—ଗରଳ, ବିଷ—ଜଳ ନର୍ତ୍ତିତେ—ନର୍ତ୍ତିତ । ଜାଙ୍ଗଳିକ—କେଳା ।

୬ । ପୁଷ୍ପବନ୍ତ—ଚନ୍ଦ୍ର ।

୮ । ଏ ପଦରେ ଓ ୯ ପଦରେ ଶ୍ରୀକୃଷ୍ଣ ତାଙ୍କୁ ଓ ରାଧାଙ୍କୁ ବର୍ଷାକାଳ ସହିତ ଉପମିତ କରୁଅଛନ୍ତି ।

୯ । ଦାତ୍ୟୂହ—ଡାହୁକ ।

୧୦ । ବିରହ ସମୟରେ ଚନ୍ଦ୍ର ଚନ୍ଦନ ପ୍ରଭୃତି ଅତୀବ ସୁଖ ଦାୟକ ପଦାର୍ଥ ଦୁଃଖ ଦାୟକ ହୁଅନ୍ତି ।

୧୧ । ଟେକ—ଅର୍ଣ୍ଣବ ।

୧୨ । କେକୀ କଳାପ—ମୟୂର ଚୂଳ । ଠାବ—ଜଣା ।

୧୪ । ଢାଳନେତ୍ର—କଟାକ୍ଷବାଣ ।

୧୫ । ପୟୋଧର—ମେଘ, ତଳୁରମାଳା—ପ୍ରଲମ୍ବ କେଶ । ସୀର—ଲଙ୍ଗଳ । ୧୫ ଓ ୧୬ ପଦରେ ରାଧା ବର୍ଷାକାଳ ସହିତ ଉପମିତ ହୋଇଅଛନ୍ତି ।

୧୬ । ବିରହ ବ୍ୟାଧି ଶିବବଇରି—ବିରହରୂପ ମୟୂର ।

୨୬ । ଜୀବନମୁଞ୍ଚ—ଜଳଦ, ଯେ ଜୀବନକୁ ଛାଡ଼ନ୍ତି ଅର୍ଥାତ୍ ପୃଥିବୀ ଉପରେ ଢାଳନ୍ତି । ବାଟଢା—ବାଧକ ।

୨୭ । ରାଜୀବପତ୍ର—ପଦ୍ମପୋଳ—ବଧାତା । ରୋଲମ୍ବ—ଭ୍ରମର ।

୩୧ । ଶିତିକଣ୍ଠ—ମୟୂର ।

୩୩ । ମୋ ମନ ମୋଦର ନନ୍ଦନ—ମୋ ମନ ମୋ ଆୟତ୍ତରେ ନାହିଁ ।

୩୪ । କ୍ଷମା ସାଗର—ଶ୍ରୀକୃଷ୍ଣ, ଲୋକମାତା ଚରଣେ—ଶ୍ରୀରାଧା ଚରଣେ, ଲୋକ—ପାଦତଳେ ସେବକ ।

---

